ଅତୀତପ୍ରୀତି
ଅନୁମୃଜନ
ଅସ୍ମିତା ବା ଆତ୍ମପରିଚିତି
ଅନ୍ତରୀକ୍ଷ-ପ୍ରଜ୍ଞାନ ନାରୀବାଦ
ଅଧିକାର ଓ ଅର୍ଥ ଶକ୍ତି
ଆଧୁନିକତା : ସ୍ୱର ଓ ସ୍ୱରୂପ
ଆତ୍ମଜୀବନୀ
ଗୋଷ୍ଠୀବର୍ଣ୍ଣନ
ଗୋଷ୍ଠୀକୈନ୍ଦ୍ରିକ
ଜଗତୀକରଣ
ନୈତିକ ଆତଙ୍କ
ନୀତିଧର୍ମ ଭିତ୍ତିକ ନେତୃତ୍ୱ
ପଢ଼ିବା ଅଭ୍ୟାସ
ପିତୃ-ପ୍ରଧାନବାଦ

# ସଂସ୍କୃତିର ତାତ୍ତ୍ୱିକତାରେ

# ପରିଭାଷା

## ଆଗ୍ଚାର୍ଯ୍ୟ ଭାବାନନ୍ଦ

ପ୍ରତିବିମ୍ବବାଦ
ପ୍ରଶାସନିକତା
ବ୍ୟାଖ୍ୟା
ବୀଜିକାଜ୍ଞାନ
ବୌଦ୍ଧିକତା
ବ୍ୟକ୍ତିକ ନେତୃତ୍ୱ
ମାନବବାଦ
ମୌଖିକତା
ରାଷ୍ଟ୍ରୀୟତାବାଦ
ଲିଙ୍ଗଭେଦ
ସଂସ୍କୃତି
ସଂସ୍କୃତିର ତାତ୍ତ୍ୱିକ ଦିଗନ୍ତ
ସମୀକ୍ଷା
ସଶକ୍ତୀକରଣ
ସାହିତ୍ୟ ଓ କଳାତ୍ମକ ଅଭିବ୍ୟକ୍ତିର ପ୍ରସାର
ଶବ୍ଦଶକ୍ତି

ସଂସ୍କୃତିର ତାତ୍ତ୍ୱିକତାରେ
ପରିଭାଷା
ଆଚାର୍ଯ୍ୟ ଭାବାନନ୍ଦ
୨୦୧୩
ମୟୁର ପବ୍ଲିକେସନ୍‌ସ୍
ଭୁବନେଶ୍ୱର

ISBN : 978-81-89626-44-0
**"Sanskrutira Tattwikatare Paribhasa"**
Acharya Bhabananda
2013
Mayur Publications
Unit-3, Bhubaneswar
D.T.P at D-Net, and Printed at
Mahaveer Printers, Bhubaneswar-1

*Rs. 100/- only*
*Rupees One hundred only*

# ସୂଚୀପତ୍ର

# ଭୂମିକା : ପରିଭାଷା ପ୍ରସଙ୍ଗ

ଏକ ନିର୍ଦ୍ଦିଷ୍ଟ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବ୍ୟବହୃତ ହୋଇ ଆସୁଥିବା ଶବ୍ଦରାଜିର ଇତିହାସ ଓ ସେମାନଙ୍କର ରୂପ ଓ ଅର୍ଥ ଖୋଜିବା ହିଁ ପରିଭାଷା ବିଜ୍ଞାନର ପରିସରଭୁକ୍ତ । ଅନ୍ୟ ଭାଷାରେ କହିଲେ "ଐତିହାସିକ ଭାଷା ବିଜ୍ଞାନ" ହିଁ "ପରିଭାଷା ବିଜ୍ଞାନ"ର ଚର୍ଚ୍ଚାକୁ ଅନେକ ସମୟରେ ଅଗ୍ରାଧିକାର ଦେଇଥାଏ ।

ଭାଷା କହିଲେ ଆମେ ମୁଖ୍ୟତଃ ଲିଖିତ ଭାଷାକୁ ହିଁ ବୁଝିଥାଉ । କିନ୍ତୁ ଲିଖିତ ଭାଷା ହେଉଛି କଥିତ ଭାଷାର ଲିପିକରଣ ମାତ୍ର । କଥିତ ଭାଷାରୁ ହିଁ ଭାଷାର ଅର୍ଥ, ରୂପ ଓ ବିବର୍ତ୍ତନକୁ ଅନୁଧ୍ୟାନ କରାଯାଇପାରେ । କାଳକ୍ରମେ କିପରି ଶବ୍ଦରାଜିର ପରିବର୍ତ୍ତନ ଘଟିଛି ତାହା ଜାଣିବାପାଇଁ ପରିଭାଷା ବିଜ୍ଞାନୀମାନେ ଚେଷ୍ଟା କରିଥାନ୍ତି । ଅନ୍ୟଥା କୌଣସି ନୂତନ ବିଦେଶୀ ଶବ୍ଦର ପ୍ରତିରୂପ ସୃଷ୍ଟି କରିବାକୁ ହେଲେ, ତାହାର ମୂଳ ଅର୍ଥକୁ ବିଗ୍ଭରକୁ ନେଇ ସେହି ଅର୍ଥ ସଦୃଶ ନିଜ ଭାଷାରେ ଥିବା ଶବ୍ଦରାଜିକୁ ଗ୍ରହଣ କରାଯାଇଥାଏ କିଂବା ଏଥିପାଇଁ ନୂତନ ଶବ୍ଦ ସୃଷ୍ଟି କରାଯାଇଥାଏ । ଏହି ମୂଳ ଅର୍ଥ ଖୋଜିବା ବେଳେ ମୁଖ୍ୟତଃ ଶବ୍ଦର ଇତିହାସକାର/ବ୍ୟାକରଣକରମାନେ କଥିତ ଭାଷାରୁ ଏହା କିପରି ଉଦ୍ଭବ ହୋଇଛି ତାହା ବିଗ୍ଭରକୁ ନେଇଥାନ୍ତି । ସେଥିପାଇଁ କଥିତ ଭାଷାର ପରିଭାଷା ବିଜ୍ଞାନୀଙ୍କୁ 'ଲୋକ ପରିଭାଷା ବିଜ୍ଞାନୀ' (Folketymologist) ଭାବରେ ବର୍ଗୀକରଣ କରାଯାଇଥାଏ । ଯେଉଁମାନେ ତୁଳନାତ୍ମକ ଭାଷା ବିଜ୍ଞାନ ଅନୁଧ୍ୟାନ କରନ୍ତି ସେମାନେ ବିଭିନ୍ନ ଭାଷା ମଧ୍ୟରେ ଥିବା ଅର୍ଥଗତ ସାଦୃଶ୍ୟକୁ ଓ ରୂପଗତ ସାମ୍ୟକୁ ବିଗ୍ଭରକୁ ନେଇଥାନ୍ତି । 'ଭାଷାତତ୍ତ୍ୱ' ପରଂପରାରୁ ହିଁ 'ପରିଭାଷା ଗବେଷଣା'ରେ ବିଭିନ୍ନ 'ଭାଷା ପରିବାର' ଭିତରେ ଥିବା ଏହି ସାଦୃଶ୍ୟ ଓ ସାମ୍ୟ ଅନୁଧ୍ୟାନ କରି ଶବ୍ଦର ଐତିହାସିକତା ପ୍ରମାଣ କରାଯାଇଥାଏ ।

ଓଡ଼ିଆ ଭାଷା ଆଲୋଚନା କ୍ଷେତ୍ରରେ ମୁଖ୍ୟତଃ ଆମେ ଦୁଇଟି ପ୍ରଧାନ ଧାରା ଲକ୍ଷ୍ୟ କରିଥାଉ । ପ୍ରାଚୀନ ଓ ମଧ୍ୟଯୁଗୀୟ ଭାଷା ସଂସ୍କୃତ ଭାଷାର ଶବ୍ଦରୂପ ଓ ଧାତୁରୂପରୁ ହିଁ ଗୃହୀତ ହୋଇଥାଏ । ଆଧୁନିକ ଓଡ଼ିଆ ଭାଷା ଓ ସଂସ୍କୃତି ବିଶେଷ ଭାବରେ 'ଇଂଲିଶ' ଦ୍ୱାରା ପ୍ରଭାବିତ । ଏହାଛଡ଼ା 'ଲୋକଭାଷା'ର ପ୍ରଭାବକୁ ମଧ୍ୟ ଅସ୍ୱୀକାର କରିହେବ ନାହିଁ । ଏ କଥା ଜଣାଶୁଣା ଯେ ଇଂଲିଶ ଭାଷା ଅନ୍ୟାନ୍ୟ ଭାଷାରୁ ଶବ୍ଦରାଜି ଗ୍ରହଣ କରିବା ଦିଗରେ ସବୁ ଭାଷାଠାରୁ ଆଗରେ ରହିଛି । ସଂସ୍କୃତ ଭାଷାରୁ ବ୍ରହ୍ମନ୍, ଗୁରୁ, କର୍ମ, ପଣ୍ଡିତ, ସତ୍ୟାଗ୍ରହ ଭଳି ଶବ୍ଦରାଜି ଏବେ ଇଂଲିଶ ଭାଷାରେ ଗୃହୀତ ହୋଇସାରିଛି ।

ପରିଭାଷା ବିଜ୍ଞାନର ଇତିହାସ ଅତ୍ୟନ୍ତ ଜଟିଳ । ପଶ୍ଚିମ ଜଗତରେ ଯେଉଁମାନେ ଏହାର ଧାରାକୁ ଅନୁଧ୍ୟାନ କରିଛନ୍ତି, ସେମାନେ ସଂସ୍କୃତ ସାହିତ୍ୟର ଚାରିଜଣ ମୁଖ୍ୟ 'ପରିଭାଷା ବିଜ୍ଞାନୀ'ଙ୍କ ନିକଟରୁ ଆବଶ୍ୟକୀୟ ଜ୍ଞାନ ଆହରଣ କରିବାକୁ ବାଧ୍ୟ ହୋଇଛନ୍ତି । ସେମାନେ ହେଲେ : ଯସ୍କ, ପାଣିନୀ, କାତ୍ୟାୟନ ଓ ପାତଞ୍ଜଳି । ଆଧୁନିକ କାଳରେ 'ଐତିହାସିକ ଭାଷାବିଜ୍ଞାନ' କ୍ଷେତ୍ରରେ ସାର୍ ଉଇଲିୟମ୍ ଜୋନ୍ସଙ୍କ ଠାରୁ ହିଁ 'ଭାରତୀୟ-ୟୁରୋପୀୟ ଭାଷା ବିଜ୍ଞାନ'ର ମୂଳଦୁଆ ପଡ଼ିଲା । ପରବର୍ତ୍ତୀ କାଳରେ ପରିଭାଷା ବିଜ୍ଞାନର ପରିସର କ୍ରମଶଃ ବ୍ୟାପକ ହେଲା । ଏପରିକି ଉନବିଂଶ ଶତାବ୍ଦୀରେ ଫ୍ରେଡ଼େରିକ୍ ନିତ୍‌ସେ ଓ ବିଂଶ ଶତାବ୍ଦୀରେ ଜାକୁସ୍ ଡ଼େରିଡ଼ା ଦର୍ଶନ ଶାସ୍ତ୍ରରେ ଏହି ପରିଭାଷା ବିଜ୍ଞାନକୁ ନେଇ ଚର୍ଚ୍ଚା କଲେ ଓ ତାହା କ୍ରମେ ଭାଷା ବିଜ୍ଞାନୀଙ୍କର ଦୃଷ୍ଟିଭଙ୍ଗୀକୁ ପ୍ରସାରିତ କଲା ।

ଓଡ଼ିଆ ଭାଷାର ଇତିହାସ ଯେଉଁମାନେ ଚର୍ଚ୍ଚା କରିଛନ୍ତି, ସେମାନଙ୍କ ଭିତରେ ଉଭୟ ସଂସ୍କୃତ ଓ ଇଂଲିଶ ଧାରାର ଗବେଷକ/ପଣ୍ଡିତ ଅଛନ୍ତି । ଏହାଛଡ଼ା ଲୋକଭାଷାର ବିଶାରଦମାନେ ଏ ଦିଗରେ କାର୍ଯ୍ୟ ଅବ୍ୟାହତ ରଖିଛନ୍ତି ।

ଏବେ ଏହି ପୁସ୍ତକ ରଚନା ସଂପର୍କରେ ସାମାନ୍ୟ ସୂଚନା ଦିଏ । ମୁଁ ଭାଷା ବିଜ୍ଞାନୀ ନୁହେଁ - ବା ସେ ଦିଗରେ କାର୍ଯ୍ୟ କରିବାର ଆଗ୍ରହରୁ ଏ କାର୍ଯ୍ୟ ହାତକୁ ନେଇନାହିଁ । ସଂସ୍କୃତିର ବିବର୍ତ୍ତନ ବିଭିନ୍ନ କାରଣରୁ ଓଡ଼ିଶାର ସମାଜରେ ମଧ୍ୟ ଘଟି ଆସିଛି । ତେଣୁ ଯେଉଁମାନେ ସଂସ୍କୃତିର ପରିବର୍ତ୍ତନକୁ ଓଡ଼ିଶାର ସମାଜ ଜୀବନରେ ଲକ୍ଷ୍ୟ କରିଛନ୍ତି, ସେମାନେ ସ୍ୱୀକାର କରିବେ ଯେ ଇଂଲିଶ ଭାଷା, ସାହିତ୍ୟ ଜରିଆରେ ଓଡ଼ିଶାର ସାଂସ୍କୃତିକ ଜୀବନ କ୍ରମଶଃ ବିବର୍ତ୍ତିତ ହେଉଛି । ଏହାକୁ ସାଂସ୍କୃତିକ ଆଦାନ-ପ୍ରଦାନ କୁହାଯାଇଥାଏ । ଏହି ବିବର୍ତ୍ତନ ପ୍ରକ୍ରିୟାରେ ଆଲୋଚକମାନେ ଏପରି ଶବ୍ଦରାଜିର ସମ୍ମୁଖୀନ ହୁଅନ୍ତି, ଯାହାର ପରିଭାଷା ତିଆରି ହୋଇନାହିଁ । ଏ କଥା ସ୍ମରଣ କରାଇଦେବା ସମିଚୀନ ହେବ ଯେ ଓଡ଼ିଆ ପରିଭାଷା ସୃଷ୍ଟି କରିବା କ୍ଷେତ୍ରରେ ଆମକୁ ସଂସ୍କୃତ/ଇଂଲିଶ/ଲୋକଭାଷାର ଶବ୍ଦକୁ ଗ୍ରହଣ କରି ତାହା ସହିତ କୋଡ଼ିଏଟି 'ଉପସର୍ଗ'ରୁ ଯେଉଁଟିର ଅର୍ଥ ଗ୍ରହଣୀୟ ତାହାକୁ ନେବା ଛଡ଼ା ଅନ୍ୟ ଉପାୟ ନାହିଁ । କିମ୍ବା କେତେକ ଓଡ଼ିଆ ଶବ୍ଦର ଅର୍ଥ ବ୍ୟାପ୍ତି କରିବାକୁ ବିଦେଶୀ ଶବ୍ଦର ଅର୍ଥ ସଦୃଶ ଅର୍ଥ ଦେବାକୁ ପଡ଼ିଥାଏ ।

'ଲୋକଭାଷା'ର ଅନୁଧ୍ୟାନ କ୍ଷେତ୍ରରେ ମଧ୍ୟ ସେହିପରି ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିଥାଏ । କେବେ କେବେ ଏଥିପାଇଁ 'ଭୁଲ୍ ପରିଭାଷା' (false etymology) ସୃଷ୍ଟି ହୋଇଥାଏ । କାଳକ୍ରମେ ଏହି ଭୁଲ ପରିଭାଷାର ବ୍ୟବହାର ଦୃଢ଼ ହୋଇଯାଏ ଓ ତାହା ସମାଜରେ ଓ ସଂସ୍କୃତି କ୍ଷେତ୍ରରେ ଗୃହୀତ ହୋଇଯାଏ । ଉଦାହରଣ ସ୍ୱରୂପ : ହିନ୍ଦୁ, ଇଂରେଜ, ଜାତୀୟତା (Nationality), ଆଦର୍ଶବାଦ (ideology) ଆଦି ।

ତେଣୁ ସାଂସ୍କୃତିକ ତତ୍ତ୍ୱ କ୍ଷେତ୍ରରେ ମଧ୍ୟ ପରିଭାଷା ତତ୍ତ୍ୱର ସ୍ୱତନ୍ତ୍ର ଇତିହାସ ରହିଛି । ଏହି 'ତାତ୍ତ୍ୱିକତା'ର 'ଅଭିଚର୍ଚ୍ଚା' (Discourse) ବିଶାରଦମାନେ ଏହାର ବିବର୍ତ୍ତନ, ପରିବର୍ତ୍ତନର ଇତିହାସ ରଚନା

କରିଥାନ୍ତି - ଏହି ପୁସ୍ତକରେ ସେହିଭଳି କେତେକ 'ପରିଭାଷା' ସୃଷ୍ଟି ଓ ତାହାର ତାତ୍ତ୍ୱିକତାର କ୍ରମବିକାଶ ବିଷୟରେ ଆଲୋଚନା କରାଯାଇଛି । ସଂସ୍କୃତିର ଉପାଦାନ ଭାବରେ ବହୁ ଶବ୍ଦ ରହିଛି । ସେ ସବୁର ଅନୁଧାନ, ବିଶ୍ଳେଷଣ ଓ ତାତ୍ତ୍ୱିକତାର ରୂପ ଉଦ୍‌ଘାଟନ କରିବା ଆବଶ୍ୟକ । କିଂତୁ ଏହା ଜଣକ ଦ୍ୱାରା ସମ୍ଭବ ନୁହେଁ । ଏଥିପାଇଁ ସମ୍ମିଳିତ ଆନୁଷ୍ଠାନିକ ଉଦ୍ୟମ ଆବଶ୍ୟକ । ଏ କ୍ଷେତ୍ରରେ ଓଡ଼ିଆ ଭାଷା ପ୍ରତିଷ୍ଠାନ, ସାହିତ୍ୟ ଏକାଡ଼େମୀ ଓ ବିଭିନ୍ନ କ୍ଷେତ୍ରରେ (ଭାଷାରେ ମଧ୍ୟ) ଥିବା ପଣ୍ଡିତମାନଙ୍କର ସମ୍ମିଳିତ ଉଦ୍ୟମ ଆବଶ୍ୟକ ।

ହଠାତ୍ ଏଭଳି ଏକ କାର୍ଯ୍ୟରେ ହାତ ଦେବାକୁ କାହିଁକି ଇଚ୍ଛା ପ୍ରକାଶ କଲି, ସେ ସଂପର୍କରେ ସୂଚନା ଦିଏ । ଗାନ୍ଧୀଜୀଙ୍କର ବହୁ ରଚନା ଓ ତାଂକ ଉପରେ ରଚିତ ବହୁ ଇଂଲିଶ ପୁସ୍ତକ ପଢ଼ିଲାବେଳେ ଅନୁଭବ କଲିଯେ ସେ ସବୁ ଜ୍ଞାନକୁ ଓଡ଼ିଆରେ ପ୍ରକାଶ କରିବା କ୍ଷେତ୍ରରେ ଓଡ଼ିଆରେ ପରିଭାଷାର ଅଭାବ ରହିଛି । ଏପରିକି ଗୋଟିଏ ଗୋଟିଏ ଶବ୍ଦକୁ ବୁଝାଇବାକୁ ହେଲେ ବର୍ଣ୍ଣନାତ୍ମକ ଉପାୟକୁ ଗ୍ରହଣ କରିବାକୁ ପଡୁଛି । ତେଣୁ କେବଳ ମାତ୍ର ଦୁଇଟି ପୁସ୍ତକ* ଏ ଦିଗରେ ମୋର ସହାୟକ ଗ୍ରନ୍ଥ ହେଲା । ତେଣୁ ଏଠାରେ ତାତ୍ତ୍ୱିକତା ଦୃଷ୍ଟିରୁ ସେହିଭଳି ମାତ୍ର ୩୦ଟି ପରିଭାଷା ଆଲୋଚନା କରାଯାଇଛି । ଆଶା କରୁଛି ଓଡ଼ିଆ ଭାଷା ସଂପଦର ଅଭିବୃଦ୍ଧି ପାଇଁ ଯୁବ ଗବେଷକ/ଷିକାମାନେ ଏ ଦିଗରେ ଅଧିକ ଧ୍ୟାନ ଦେବେ ।

୨୦ ମାର୍ଚ୍ଚ, ୨୦୧୩ ଆର୍ଯ୍ୟ ଭାବାନନ୍ଦ

* ୧. *Raymond Williams; KEY WORDS, A Vocabulary of Culture and Society (1983, N.Y)*

୨. *Peter Brooker; A GLOSSARY OF CULTURAL THEORY (2003, N.Y)*

# ଅତୀତପ୍ରୀତି (Nostalgia)

ନିକଟରେ ସ୍ୱାଧୀନତା ସଂଗ୍ରାମର ୧୫୦ ବର୍ଷ ପାଳନ ହେଲା । ତା'ର କିଛି ଦିନ ପୂର୍ବରୁ 'ସତ୍ୟାଗ୍ରହ ଶତାବ୍ଦୀ' ପାଳିତ ହେଲା - ପୁଣି ସ୍ୱାଧୀନତାର ୬୦ ବର୍ଷ ପୂର୍ତ୍ତି ଉତ୍ସବ ମଧ୍ୟ ପାଳନ ହୋଇଗଲା । ଆନ୍ତଃରାଷ୍ଟ୍ରୀୟ କ୍ଷେତ୍ରରେ ''ଅହିଂସା'' ଦିବସ ବି ମହସମାରୋହରେ କଟିଗଲା । ଏହାକୁ ଲକ୍ଷ୍ୟ କରି ଗଳ୍ପ, କବିତା, ପ୍ରବନ୍ଧ, କାରୁକଳା, ଚାରୁକଳା, ସଂଗୀତ ଆଦିର ଯେଉଁ 'ଅଭିବ୍ୟକ୍ତି' ସବୁ ମୁଦ୍ରିତ ହରଫରେ ବା ଗଣଯୋଗାଯୋଗ ମାଧ୍ୟମରେ ପ୍ରଚାରିତ/ପ୍ରସାରିତ ହେଲା, ସେ ସବୁକୁ ''ପାରିଭାଷିକ ପ୍ରତ୍ୟୟ'' ଜରିଆରେ କିଭଳି ନାମିତ କରାଯାଇ ପାରିବ । ଏ ସମ୍ବନ୍ଧରେ ଚିନ୍ତା କରୁକରୁ ଇଂରେଜୀରେ nostalgia ଶବ୍ଦ /ପ୍ରତ୍ୟୟଠାରେ ଅଟକି ଗଲି । ତା'ର ଯେଉଁ ଅର୍ଥ/ ଆଲୋଚନା ଆଦି କରାଯାଇଛି -ସେଥିରୁ ମନେ ହେଲା ଯେ ଏହା ଏକ ସନ୍ତୋଷଜନକ ''ପ୍ରତ୍ୟୟ'' ହେବ (ଏ ସଂପର୍କରେ କାହାର ଦ୍ୱିମତ ଥିଲେ ତାହା 'ଆଲୋଚିତ' ହେବା କାମ୍ୟ) ।

ଇଂରାଜୀ ପ୍ରତ୍ୟୟ Nostalgia ର ଜନକ ଫ୍ରେଡ୍ରେରିକ ଜେମ୍‌ସନ ପ୍ରଥମେ ଏହି ପ୍ରତ୍ୟୟ ଜରିଆରେ ''ପରାଧୁନିକତା''ର (Postmodernity) ଅଭିବ୍ୟକ୍ତିଗୁଡ଼ିକୁ ବିଶ୍ଳେଷଣ କରି କହିଲେ ଯେ ''ପରାଧୁନିକ'' ସାହିତ୍ୟରେ ଅତୀତର ଦୃଷ୍ଟାନ୍ତ, କାହାଣୀ, ପ୍ରତୀକ, ଶବ୍ଦ ବ୍ୟଞ୍ଜନା ଆଦିର ସମକାଳିକ (Synchronic) ଉପଯୋଗ କରି ଏହାକୁ ଏକ ''ସାଂସ୍କୃତିକ ଶୈଳୀ'' ଭାବରେ ଗ୍ରହଣ କରାଯାଇପାରେ । ସେ ଆମେରିକୀୟ ଔପନ୍ୟାସିକ ଡକ୍ଟୋରୋଙ୍କ ରଚନାକୁ ବିଶ୍ଳେଷଣ କରି ମତ ପ୍ରକାଶ କରିଛନ୍ତି ଯେ ''ଅତୀତପ୍ରୀତି'' ଅଲିଖିତ ଐତିହାସିକ ସତ୍ୟ । ଏହା ଆବିଷ୍କୃତ ହେଉଛି ଓ କାଳକ୍ରମେ ଏହା ''ବାସ୍ତବ ଇତିହାସ ''ରଚନା କରିବାରେ ସାହାଯ୍ୟ କରିବ (ଉଦାହରଣ ସ୍ୱରୂପ ଓଡ଼ିଶାରେ ''ପାଇକ ବିଦ୍ରୋହ'' ଆଦି) । ଏହାକୁ ଐତିହାସିକ ପୁନର୍ଗଠନ କୁହାଯାଇଥାଏ । ଦ୍ୱିତୀୟତଃ ଏହା ଅତୀତର 'ଅଭିଜ୍ଞତା' (ଜୀବନୀ/ଆତ୍ମଜୀବନୀ/ସ୍ମୃତିକଥନ ଆଦି) ଉପରେ ନିର୍ଭର କରି ଆମକୁ ନୂତନ ଐତିହାସିକ ଉପାଦାନ ଯୋଗାଇ ପାରିବ ( ଏ କ୍ଷେତ୍ରରେ ଗ୍ରାମୀଣ, ଶାସ୍ତ୍ରୀୟ, ମାନକ ଭାଷାରେ ଅବ୍ୟବହୃତ ଶବ୍ଦରାଜିର ବ୍ୟବହାର) । ପୁଣି ଏହା କେତେକ ନିର୍ଦ୍ଦିଷ୍ଟ ନିର୍ବାଚିତ 'କଥନ'କୁ ଏପରି ଉପସ୍ଥାପିତ କରିଥାଏ, ଯାହା 'କାଳ ନିରୂପିତ ଐତିହାସିକ'

ଉପାଦାନ, ତା' ଆଗରେ ନ୍ୟୂନ ମନେ ହୁଏ । ଏହି ନିର୍ବାଚନ ପ୍ରକ୍ରିୟାର ଅଭିବ୍ୟକ୍ତି ମଧ୍ୟ ଇତିହାସର ଧାରାଠାରୁ ଉର୍ଦ୍ଧ୍ୱରେ ''ଚିରନ୍ତନତା'' ପ୍ରତିପାଦନ କରିଥାଏ (ଯେପରି ''ରାମ''ଙ୍କର ଇତିହାସକୁ ନେଇ ଏବର ରାଜନୈତିକ ଗରମାଗରମ ଆଲୋଚନା ପ୍ରସଙ୍ଗ) ।

ଏଥିରୁ ସୂଚିତ ହେଉଛି ଯେ ''ପରାଧୁନିକ'' ଅଭିବ୍ୟକ୍ତିରେ ''ଅତୀତପ୍ରୀତି''ର ଦୃଷ୍ଟାନ୍ତଗୁଡ଼ିକ ଆତ୍ମ(ବା ରୂପ) ସଚେତନ ଓ ''ସମାଲୋଚିତ''ର ଦୃଷ୍ଟିଭଙ୍ଗୀରେ ଉପସ୍ଥାପନ କରାଯାଇଥାଏ । ଏହାକୁ ''ଆପଣାଛାଏଁ ପ୍ରତିପାଦିତ'' ପ୍ରମାଣ ଭାବରେ ଗ୍ରହଣ କରାଯାଇଥାଏ (ଏଠାରେ କାଳ-ନିରୂପିତ ଇତିହାସ ମୂଲ୍ୟହୀନ !) । କିନ୍ତୁ ଏକଥା ମଧ୍ୟ ସତ୍ୟ ଯେ ଏହି 'ଅତୀତପ୍ରୀତି'ର ଉପାଦାନଗୁଡ଼ିକ ସ୍ମୃତି, ଜନଶ୍ରୁତି, ଅଭିଜ୍ଞତା ଆଦିର ବିଚିତ୍ର ସମାରୋହ । ଏହାକୁ କେବଳ ରୋମନ୍ଥନ କରିବାରେ କୌଣସି ନୂତନତ୍ୱ ନାହିଁ । ବରଂ ଏହି ରୋମନ୍ଥନରୁ ''ସାଂପ୍ରତିକ କାଳ'' କି ଶିକ୍ଷା ଲାଭ କଲେ ତାହା ମଣିଷ ଜୀବନ ଓ ସମାଜକୁ ପ୍ରେରଣା ଯୋଗାଇ ପାରିବ, ତାହା ବିଚାରକୁ ନେବା ଆବଶ୍ୟକ । ଏଲିଜାବେଥ୍ ଉଇଲସନ୍ ଏ ସଂପର୍କରେ ଆଲୋଚନା କରି ପ୍ରକାଶ କରିଛନ୍ତି ଯେ ଏହା ମଧ୍ୟ ''ସ୍ମୃତିଚାରଣ''ର ''ରାଜନୀତିକରଣ'' ହୋଇଯାଇପାରେ । ପୁଣି ଏହା ମଧ୍ୟ ନିଛକ୍ ''ଭାବପ୍ରବଣତା''ର ପରିପ୍ରକାଶ ହୋଇପାରେ । ଅତୀତର କେଉଁ ''ଉପାଦାନ''କୁ ଆମେ ଅବହେଳା କରି ଆସିଛୁ ଓ ଫଳରେ କାଳର ଗତି ପ୍ରବାହରେ ଆମେ କେତେ ଦୂର ଅଗ୍ରସର ହୋଇଛୁ ତାହା ମଧ୍ୟ ଆଲୋଚ୍ୟ । କାରଣ ଯେଉଁ ''ଉପାଦାନ''ଗୁଡ଼ିକ ଆମେ ତ୍ୟାଗ କରି ସାରିଛୁ, ସେ ସବୁ ଏବେ କିପରି ଗ୍ରହଣୀୟ ହୋଇପାରିବ, ସେ ସଂପର୍କରେ ଗଭୀର ଓ ଗମ୍ଭୀର ଆଲୋଚନାର ଆବଶ୍ୟକତା ରହିଛି । କେବଳ ସେଗୁଡ଼ିକ ବର୍ଣ୍ଣନା କରି ଦେଲେ ଚଳିବ ନାହିଁ । ତା'ର ''ନିର୍ଯ୍ୟାସ''ଗୁଡ଼ିକର ଉପସ୍ଥାପନା ଏକାନ୍ତ ଆବଶ୍ୟକ । ତେଣୁ ''ଅତୀତପ୍ରୀତି'' ପ୍ରତ୍ୟୟ, ଅତୀତ ଓ ଭବିଷ୍ୟତ ମଧ୍ୟରେ ଏକ ସେତୁ ନିର୍ମାଣ କରିପାରିବ । ଏ ଦିଗରେ ଭାରତରେ ''ପାରିଭାଷିକ'' ତାତ୍ତ୍ୱିକତା କ୍ଷେତ୍ରରେ ମୁଁ ଗାନ୍ଧୀଙ୍କୁ ଏକ ବିରଳ ପ୍ରତିଭା ଭାବରେ ଗ୍ରହଣ କରିଥାଏ । ଅନୁଗ୍ରହ କରି ତାଙ୍କର 'ଏକାଦଶ ବ୍ରତ'ର ପରିଭାଷାଗୁଡ଼ିକ ଆଲୋଚନା କରନ୍ତୁ । ସେଠାରେ ''ଅତୀତପ୍ରୀତିକୁ କିପରି ସମାଜର ଭବିଷ୍ୟତ ପରିବର୍ତ୍ତନରେ ଗ୍ରହଣ କରାଯାଇଛି, ତାହାର ବଳିଷ୍ଠ ଦୃଷ୍ଟାନ୍ତ ରହିଛି ।



# ଅନୁସୃଜନ (Transcreation)

ପ୍ରତ୍ୟେକ 'ଶବ୍ଦ' ଯାହା ଆମେ ଉଚ୍ଚାରଣ କରୁ ବା ଲିପି ଜରିଆରେ ପ୍ରକାଶ କରୁ ତାହା କେବଳ କେତେଗୁଡ଼ିଏ ସଂକେତ । ସେହି ସଂକେତ ଭାଷାର ଉତ୍ପତ୍ତି କାଳରୁ କେତେକ ଅର୍ଥ ପ୍ରକାଶ କରି ଆସିଥାଏ । କିନ୍ତୁ ସମୟ ଓ କାଳରେ ପରିବର୍ତ୍ତନ ଫଳରେ ଏହି ପାରଂପରିକ 'ଅର୍ଥ'ରେ ପରିବର୍ତ୍ତନ ମଧ୍ୟ ଘଟେ । ବେଳେବେଳେ ପାରଂପରିକ ଅର୍ଥର ବିପରୀତ ଅର୍ଥ ମଧ୍ୟ ପ୍ରକାଶ କରିଥାଏ । ଗୋଟିଏ ଭାଷା ସହିତ ଆଉ ଗୋଟିଏ ଭାଷା ସଂସ୍ପର୍ଶରେ ଆସିଲେ, ପରସ୍ପର ମଧ୍ୟରେ ବୁଝାମଣା ପାଇଁ ବା ଜଣେ ଯେଉଁ ଭାଷାରେ କେତେକ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରିବାକୁ ଚାହେଁ, ତାହା 'ଶୁଣିବା ଲୋକ' ବା 'ନିଜଭାଷା'ରେ ତାହା ପ୍ରକାଶ କରିବା ପାଇଁ ଲେଖକଟିଏ ଯେଉଁ ଭିନ୍ନ ସଂକେତ ଗ୍ରହଣ କରିଥାଏ, ତାହା ଆକ୍ଷରିକ ଅର୍ଥ ବହନ କରିବାକୁ ସକ୍ଷମ ହୁଏ ନାହିଁ । ତେଣୁ ''ଅନୁବାଦ'' କାର୍ଯ୍ୟ ଦୁଇ ଭାଷାଭାଷୀଙ୍କ ମଧ୍ୟରେ ଅର୍ଥ ପ୍ରକାଶ କରିବାର ଏକ ମାଧ୍ୟମ । ତେଣୁ 'ଅନୁବାଦ' ଅର୍ଥାତ୍ ''ଅନୁ + ବାଦ'' ଅନେକ ସମୟରେ ଅନୁ +ସୃଜନ କାର୍ଯ୍ୟ କରିଥାଏ । ଅର୍ଥାତ୍ ମୂଳ ଲେଖାକୁ ଶୁଣି ବା ପଢ଼ି ତାହାର ମୌଳିକ ଅର୍ଥକୁ ରକ୍ଷାକରି 'ଭାବ ବ୍ୟଞ୍ଜନା'କୁ ପ୍ରକାଶ କରିବା କାର୍ଯ୍ୟ ହିଁ 'ଅନୁବାଦ' ବା ଅନୁସୃଜନ ।

ଦେଖାଯାଇଥାଏ ଯେ ଦୁଇଟି ଭାଷାର ବ୍ୟୁପତ୍ତିଥିବା ଲୋକଟିଏ ବା ଲେଖକଟିଏ ହିଁ ଏହି କାର୍ଯ୍ୟ କରିବାକୁ ସକ୍ଷମ ହୋଇଥାଏ । କିନ୍ତୁ ଏଥିପାଇଁ ''ନାମ ବାଚକ ବିଶେଷ୍ୟ'' ଗୁଡ଼ିକ ପ୍ରାୟ ଅନୁବାଦ କରାଯାଇ ନଥାଏ । ଉଦାହରଣ ସ୍ୱରୂପ ପ୍ରାଚୀନ ଓଡ଼ିଆରେ ଅନୁବାଦ କଲାବେଳେ (ଅବଶ୍ୟ ଅନ୍ୟ ଭାଷାଭାଷୀଙ୍କ ସହିତ ଓଡ଼ିଆ ଭାଷାଭାଷୀ ସଂସ୍ପର୍ଶରେ ଆସିବା ପରେ) କେତେକ ''ମ୍ୟାକ୍ସମୁଲାର'' ନାମକ ବ୍ୟକ୍ତିଙ୍କ ନାମକୁ ''ମୋକ୍ଷମୁଲାର'' କରିଥିବାର ଦୃଷ୍ଟାନ୍ତ ରହିଛି । ତେଣୁ କୌଣସି ଏକ ''ପାଠ''ର ''ଶୁଦ୍ଧ'' ଅନୁବାଦ ସମ୍ଭବ ନୁହେଁ - ଏଠାରେ ଭାଷାର ଶୈଳୀକୁ ଗ୍ରହଣ କରି, ଭାଷାର ବ୍ୟାକରଣକୁ ଅନ୍ୟ ଏକ ଭାଷାରେ ରୂପାନ୍ତରିତ କରିବା ସମ୍ଭବ ନୁହେଁ । ତେଣୁ ''ଅନୁବାଦ'' ପ୍ରାୟ ଭାବର ହିଁ ଅନୁବାଦ । ଗୋଟିଏ ''ଗଳ୍ପ''ର, କାହାଣୀର କ୍ରମ, ନାୟକ ନାୟିକାର ନାମ, ପ୍ରକାଶଭଙ୍ଗୀକୁ 'ଅନୁଭବ' ଭିତରକୁ ନେଇ ସେହି ''ଭାବ''କୁ ମୂଳ ''ଭାବ'' ଠାରୁ ଭିନ୍ନ ନ କରିବା ହିଁ ଅନୁସୃଜନ । ବିଭିନ୍ନ ଭାଷା ଓ ସଂସ୍କୃତିର ଅନ୍ତରାଳରେ କେତେକ ଭାବ ଥାଏ ଯାହା ସାର୍ବଜନୀନ ବୋଲି ବିଚାର କରାଯାଇଥାଏ - ତେଣୁ ଏହି ''ସାର୍ବଜନୀନତାକୁ ଆବିଷ୍କାର କରିବାକୁ ''ଅନୁବାଦକ'' ମୂଳ ଲେଖାର ନିକଟବର୍ତ୍ତୀ ହେବା କାମ୍ୟ । ତାହାହେଲେ ମୂଳ

ଲେଖାରେ, ଲେଖକର ଭାବାବେଗ, ପ୍ରକାଶ ଭଙ୍ଗୀକୁ 'ଅନୁଭବ' ଭିତରକୁ ନେଇ ସେହି ''ଭାବ''କୁ ମୂଳ ''ଭାବ'' ଠାରୁ ଭିନ୍ନ ନ କରିବା ହିଁ ଅନୁସୃଜନ । ବିଭିନ୍ନ ଭାଷା ଓ ସଂସ୍କୃତିର ଅନ୍ତରାଳରେ କେତେକ ଭାବ ଥାଏ ଯାହା ସାର୍ବଜନୀନ ବୋଲି ବିଚାର କରାଯାଇଥାଏ - ତେଣୁ ଏହି ''ସାର୍ବଜନୀନତା''କୁ ଆବିଷ୍କାର କରିବାକୁ ''ଅନୁବାଦକ'' ମୂଳଲେଖାର ନିକଟବର୍ତ୍ତୀ ହେବା କାମ୍ୟ । ତାହାହେଲେ ମୂଳ ଲେଖାରେ, ଲେଖକର ଭାବାବେଗ, ପ୍ରକାଶଭଙ୍ଗୀକୁ ଅନୁଦିତ ଭାଷାରେ ରକ୍ଷା କରିପାରିବା । ଅନୁଦିତ ଲେଖା ମୂଳ ଲେଖାର ଯେତିକି ନିକଟବର୍ତ୍ତୀ ହୋଇପାରେ ତାହା ସେତିକି ପରିମାଣରେ ସାର୍ଥକ ଅନୁବାଦ ବୋଲି ପାଠକ ପାଠିକା ଗ୍ରହଣ କରି ନିଅନ୍ତି ।

ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ବହୁ ଭାଷା ଆୟତ୍ତ କରିବା ସମ୍ଭବ ନୁହେଁ । ତେଣୁ ଅନ୍ୟ ଭାଷାରେ କ'ଣ ଘଟୁଛି ବା ଅନ୍ୟ ଭାଷାର ଲେଖକ ଲେଖିକା କିଭଳି ଲେଖୁଛନ୍ତି, କେଉଁ କାହାଣୀ, କେଉଁ ଭାବ ଅନ୍ୟମାନଙ୍କର ଜାଣିବା ଆବଶ୍ୟକ—ତାହା ଆମର କିଛି ପାଠକ/ପାଠିକା ଜାଣିବାକୁ ଚାହାନ୍ତି । ସେଇଠି ଅନୁବାଦର ଆବଶ୍ୟକତା ରହି ଆସିଛି । ବିଭିନ୍ନ ''ସଂସ୍କୃତି'' ମଧ୍ୟରେ ଭାବର ଆଦାନ ପ୍ରଦାନ ପାଇଁ ଏହି ଅନୁବାଦର ଆବଶ୍ୟକତା ବଢ଼ି ବଢ଼ି ଚାଲିଛି । ଭାଷା ଓ ସାହିତ୍ୟ ଜରିଆରେ ପରସ୍ପରର ସଂସ୍କୃତି ମଧ୍ୟରେ ଯୋଗାଯୋଗ ସ୍ଥାପନ ଏହାର ଉଦ୍ଦେଶ୍ୟ । ମନେ କରନ୍ତୁ ସାରଳା ଦାସଙ୍କ ମହାଭାରତ ବା ଜଗନ୍ନାଥ ଦାସଙ୍କ ଭାଗବତ । ଏହା ମୂଳ ଲେଖାର ଆକ୍ଷରିକ ଅନୁବାଦ ନୁହେଁ । ବରଂ ମୂଳ ଲକ୍ଷ୍ୟକୁ ଅବ୍ୟାହତ ରଖି ଏହା ଓଡ଼ିଆ ଭାଷାରେ ପ୍ରକାଶିତ ଓ ଏହା ନିଜର ସ୍ୱାତନ୍ତ୍ୟ ରକ୍ଷା କରିଛି । ତେଣୁ ଏହାକୁ ''ଅନୁବାଦ'' କୁହାଯାଇ ପାରିବ ନାହିଁ ବରଂ ଏହା ମୌଳିକ ରଚନା ବୋଲି ଗ୍ରହଣ କରିବାରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହେବାର ସମ୍ଭାବନା କମ୍ । ତେଣୁ କାଳକ୍ରମେ ଏହି ''ଅନୁବାଦ''କୁ ''ସାଂସ୍କୃତିକ ଭିନ୍ନତା''ର ଅଭିଜ୍ଞତା ଭାବରେ ବିଚାର କରାଯାଇଥାଏ । ଏହା ମଧ୍ୟ ଅନେକ ସମୟରେ ସାଂସ୍କୃତିକ ''ଅସ୍ମିତା'' ବା ''ଆତ୍ମ-ପରିଚିତି''ର ସୂଚକ ହୋଇଥାଏ । ଯେଉଁଠାରେ ଉଭୟ ଭାଷାର ଲେଖକ/ଲେଖିକା ଜୀବିତ, ସେଠାରେ ''ଅନୁବାଦକ''କୁ ମୂଳ ଲେଖକର ସ୍ୱୀକୃତି ଆଣିବା ଆବଶ୍ୟକ (ଅବଶ୍ୟ ଉଭୟ ମୂଳ ଲେଖକ ଓ ଅନୁବାଦକ ଯଦି, ଯେଉଁ ଭାଷାରେ ଏହା ଅନୁଦିତ ହେଉଛି, ତାହା ସହିତ ପରିଚିତ ଥାନ୍ତି) । ଧରନ୍ତୁ, ଏବେ ''ଓଡ଼ିଆ''ରୁ ''ଇଂରାଜୀ''କୁ ଅନେକ ସର୍ଜନାତ୍ମକ ସାହିତ୍ୟ ଅନୁଦିତ ହେଉଛି । କେବଳ ଗତ ୧୦/୧୫ବର୍ଷ ଭିତରେ ପ୍ରାୟ ୫୦/୬୦ ଖଣ୍ଡ ବହି ପ୍ରକାଶ ପାଇ ସାରିଛି - ଯାହା ଉଭୟ ମୂଳ ଲେଖକ ଓ ଅନୁବାଦକଙ୍କ ମଧ୍ୟରେ ବୁଝାମଣା ଯୋଗୁଁ ହିଁ ସମ୍ଭବ । ତେଣୁ ମାର୍କ୍ସ, ବା ଗାନ୍ଧୀ, ବା ଭର୍ତ୍ତୃହରି ଯେଉଁ ଭାଷାରେ ତାହା

ଲେଖିଥିଲେ ଓ ଯେଉଁ ସମୟରେ, ଯେଉଁ ଲକ୍ଷ୍ୟ ନେଇ ତାହା ଲେଖିଥିଲେ, ସେ ସବୁ ''ନିଜଭାଷା''ରେ ବ୍ୟକ୍ତ କଲାବେଳେ (କେଉଁ ସମୟରେ ଏହା କରାଯାଉଛି ଲକ୍ଷ୍ୟ କରିବାର କଥା) ମୂଳଲେଖାର ଭାଷା, ଭାବ, ଅର୍ଥ ରକ୍ଷା କରାଯାଇ ପାରୁଛି କି ନାହିଁ ଲକ୍ଷ୍ୟ କରିବାର କଥା । ତା'ନହେଲେ ଅନୁବାଦ କଲାବେଳେ ଅନୁବାଦକ ''ବ୍ୟାଖ୍ୟାକାର'' ହୋଇଯିବାର ସମ୍ଭାବନା ଉଣା ନୁହେଁ - । ନିକଟରେ ସଲମାନ୍ ରସ୍‌ଦି ବା ତସଲିମାଙ୍କ ଲେଖାକୁ ନେଇ ଯେଉଁ ତର୍ଜମା ହେଉଛି - ତାହା ତା'ର ପ୍ରକୃଷ୍ଟ ଉଦାହରଣ । ଏଠାରେ କୌଣସି ମୂଳ ଲେଖାର ଧାଡ଼ିଧାଡ଼ି, ଭାଷାତାତ୍ତ୍ୱିକ ଅନୁବାଦ କରାଯାଇନାହିଁ । ବରଂ କେତେକ 'ଭାବଧାରା'କୁ ଅନୁବାଦ କଲାବେଳେ ଏହା ମୌଳିକତାବାଦୀ ଓ ପରିବର୍ତ୍ତନକାମିଙ୍କ ମଧ୍ୟରେ ଥିବା ସଂଘର୍ଷର ସୂତ୍ରପାତ କରିଥାଏ । ଇତିହାସରେ ଏହାର ଭୂରିଭୂରି ଦୃଷ୍ଟାନ୍ତ ରହିଛି । ପୃଥିବୀରେ ବୋଧହୁଏ 'ବାଇବେଲ' ସବୁଠାରୁ ଅଧିକ ଭାଷାରେ ଅନୁଦିତ ହୋଇନ୍ତି । ପୁଣି ବିଜ୍ଞାନର (ପାଶ୍ଚାତ୍ୟ) ଆବିଷ୍କାର ପରେ ବିଜ୍ଞାନ ଓ ଧର୍ମଧାରଣା ମଧ୍ୟରେ, ବିଶ୍ୱାସ ଓ ଜୀବନଯାତ୍ରା କ୍ଷେତ୍ରରେ ବହୁ ପରିବର୍ତ୍ତନ ଘଟିଛି ଓ ଘଟୁଛି । ଏସବୁକୁ ଶବ୍ଦ ଓ ଭାଷାର ପରିଧି ମଧ୍ୟରେ ବ୍ୟକ୍ତ କରିବା ସହଜ କାର୍ଯ୍ୟ ନୁହେଁ । ତେଣୁ ଯେଉଁ ଅନୁବାଦକ ଉଭୟ ଭାଷାରେ (ମୂଳ ଲେଖାର ଭାଷା ଓ ଅନୁଦିତ ହେଉଥିବା ଭାଷା) ପ୍ରବୀଣ ନୁହେଁ, ସେ ଅନୁବାଦ କାର୍ଯ୍ୟକୁ ସଫଳତାର ସହିତ ପ୍ରତିପାଦନ କରିବା ସମ୍ଭବ ନୁହେଁ । ଏହା ସତ୍ତ୍ୱେ ଏଭଳି କେତେକ ବାକ୍ୟାଂଶ ବା ଭାବନା ରହିଯାଏ ଯାହା ଅନୁବାଦ କରିବା ସମ୍ଭବ ହୁଏନାହିଁ - ତେଣୁ କାଳକ୍ରମେ ସେଗୁଡ଼ିକ ଗୃହୀତ ହୋଇଯାଏ । ଯେପରି ସ୍କୁଲ, କଲେଜ, ଟେବୁଲ, ଡ଼େକ୍ସ ଆଦି ଅସଂଖ୍ୟ ଉଦାହରଣ ଦିଆଯାଇପାରେ । ଏବେ କମ୍ପ୍ୟୁଟରର ଉଦ୍ଭାବନ ଫଳରେ ବିଭିନ୍ନ ଭାଷା ମଧ୍ୟରେ ଯୋଗସୂତ୍ର ବଢୁଛି । ମୋଟାମୋଟି ଭାବରେ କହିଲେ ''ଅନୁବାଦ'' ଏକ ବିତର୍କିତ ପ୍ରକ୍ରିୟା । ଆମେ ସମସ୍ତେ ''ଅନୁଦିତ ବ୍ୟକ୍ତି'' । ତେଣୁ ଅନୁବାଦକୁ କେବଳ ଭାଷା, ବ୍ୟାକରଣ, ବା କାହାଣୀ ବା ଗଳ୍ପର ଅନୁବାଦ ଭାବରେ ଧରାଯାଇ ନପାରେ । ଏହା ''ଭାବର'' ଅନୁବାଦ, ''ସଂସ୍କୃତିର'' ହିଁ ଅନୁବାଦ । ତେଣୁ ଗାଁର ସଂସ୍କୃତିକୁ ଭାଷା ଓ ଭାବକୁ, ସହରୀ ଭାଷାରେ ପ୍ରକାଶ କରିବା ବା ସହରୀ ଭାବ, ଭାଷା, ସଂସ୍କୃତିକୁ ଗ୍ରାମର ଭାଷାରେ ରୂପାନ୍ତରିତ କରିବା ମଧ୍ୟ 'ଅନୁବାଦ' କାର୍ଯ୍ୟ । ଯେଉଁମାନେ ''ସହରୀ ଭାଷାରେ'' (ବା ଯାହାକୁ ମାନକ କୁହାଯାଇଛି) ଲେଖୁଛନ୍ତି - ସେ ଲେଖାକୁ ନେଇ ଟିକେ ''ଅପନ୍ତରା'' ଗାଁରେ ପଢ଼ି ଶୁଣାନ୍ତୁ - ଦେଖିବେ ସେମାନେ କିଛି ବୁଝି ପାରୁନାହାନ୍ତି (କିନ୍ତୁ ଉଭୟ ଓଡ଼ିଆ ଭାଷାଭାଷୀ) । ତେଣୁ ଯେଉଁମାନେ 'ଅନୁବାଦ' କାର୍ଯ୍ୟ କରନ୍ତି, ସେମାନେ ମଧ୍ୟ ସ୍ରଷ୍ଟା ।

(ନିକଟରେ ମୋର ଗୋଟିଏ ଗଳ୍ପ ଅନୁଦିତ ହୋଇ ଇଂରାଜୀରେ ପ୍ରକାଶିତ ହେଲା - ସେହି ଗଳ୍ପ ପୂର୍ବରୁ ବଂଗଳାରେ ଓ ଏବେ ''ଅହମିୟା'' ଭାଷାରେ ଅନୁଦିତ ହୋଇଥିଲା - ଅନୁବାଦକ ''ଓଡ଼ିଆ''ରୁ ଏହା ନକରି ଇଂରାଜୀରୁ କରିଛନ୍ତି । ମତେ ଯେତେବେଳେ ଅନୁମତି ମାଗିଲେ - ମୁଁ ଉତ୍ତର ଦେଲି - ମୁଁ ତ ''ଅନୁମତି ଦେଉଛି'', କିନ୍ତୁ ଅନୁଗ୍ରହ କରି ''ଅନୁବାଦିକା''ଙ୍କୁ ସ୍ୱୀକୃତି ଦେବେ । କାରଣ ଏଥିପାଇଁ ମୋର ଯେତିକି ''ଅଧିକାର'' ଅଛି, ''ଅନୁବାଦିକା''ଙ୍କର ମଧ୍ୟ ସେହି ''ଅଧିକାର'' ରହିଛି । କାରଣ ସେ ଏହି ''ଗଳ୍ପକୁ'' ହିଁ ପୁନର୍ଜନ୍ମ ଦେଇଛନ୍ତି । ଏହା ଆସାମର ଅନୁବାଦକ ସ୍ୱୀକାର କରିନେଲେ । ''ଅନୁବାଦିକା'' ମତେ ଫୋନ୍‌ରେ ଧନ୍ୟବାଦ ଜଣାଇଲେ ଯେ ''ଆପଣ'' ଚାହିଁ ନଥିଲେ ''ଅନୁବାଦିକା'' କୁ ସେତିକି ସ୍ୱୀକୃତି ମିଳେନାହିଁ ।)

ଏ ଉଦାହରଣ ଦେବାର ଉଦ୍ଦେଶ୍ୟ ହେଉଛି, ଆମେ ମାର୍କ୍ସ ବା ଗ୍ରାମ୍‌ସି, ବା ଗାନ୍ଧୀଙ୍କ ଲେଖା ଅନୁବାଦ କଲାବେଳେ, ସେହି ପ୍ରଶ୍ନ ରହୁଛି ''ଅନୁବାଦକ'' ମୂଳ ଲେଖାର କେତେ ନିକଟବର୍ତ୍ତୀ । ତେଣୁ ଅନୁବାଦକ/ଅନୁବାଦିକା, ମୂଳଲେଖା, କେଉଁ ପରିସ୍ଥିତିରେ, କେଉଁ ଭୌଗୋଳିକ ପରିବେଶରେ ଓ ତାହାର ଆବଶ୍ୟକତା ଓ ତାହାର ''ସୀମା'' - ବର୍ତ୍ତମାନ ସମୟରେ କିପରି ହେବା ଆବଶ୍ୟକ, ସେ ସମ୍ପର୍କରେ ସଚେତନ ରହିବା ଆବଶ୍ୟକ । ଉଦାହରଣ ସ୍ୱରୂପ ଭଗବତ୍ ଗୀତା ଅନୁବାଦ ଓ ତାହାର ଭାଷ୍ୟକାରଙ୍କ ମଧ୍ୟରେ ତର୍କ ବିତର୍କର ଅବସାନ ଏବେ ବି ଘଟିନାହିଁ —କାରଣ ବ୍ୟାଖ୍ୟାକାର ବା ସମାଲୋଚକ, ଏହି ଭାଷ୍ୟଗୁଡ଼ିକୁ ମୂଳ ଲେଖାର ନିକଟବର୍ତ୍ତୀ କି ନାହିଁ ଓ ମୂଳ ଲେଖାର ଅର୍ଥ, ସଠିକ୍ ଭାବରେ ପ୍ରକାଶିତ ହେଉଛି କି ନାହିଁ—ତାହା ହିଁ ଏହି ''ପ୍ରତ୍ୟୟଗତ ପରିଭାଷା'' (Conceptual Etymology)ର ତାତ୍ତ୍ୱିକତାର ପ୍ରବାହ ସ୍ଥିର କରିଥାଏ ।

ତେଣୁ ''ଅନୁବାଦ'' ବଦଳରେ ''ଅନୁସୃଜନ'' ପ୍ରତ୍ୟୟ ବୋଧହୁଏ ଅଧିକ ଗ୍ରହଣଯୋଗ୍ୟ ହେବା କାମ୍ୟ । ସାମାନ୍ୟ ''ରୁକ୍ଷଭାଷା''ରେ କହିଲେ ଆମେ ସମସ୍ତେ, ଭାଷା, ଭାବ, ଅର୍ଥର ''ଅପହରଣକାରୀ'' (ଇଂରାଜୀରେ Kidnapper) । ଅଭିଚର୍ଚ୍ଚା କ୍ଷେତ୍ରରେ ଏହା ମଧ୍ୟ ସେହିଭଳି ଏକ ବିବଦମାନ ବିଷୟ ।



# ଅସ୍ମିତା ବା ଆତ୍ମପରିଚିତି (Identity)

'ସାହିତ୍ୟ' ବା 'ଲିପିବଦ୍ଧ ଅଭିବ୍ୟକ୍ତି' ସଂସ୍କୃତିର ଏକ ବିଶିଷ୍ଟ ଉପାଦାନ ଭାବରେ ଗୃହୀତ ହୋଇ ଆସିଛି । ଉଭୟ 'ଲିଖିତ' ଓ 'ମୌଖିକ' ସାହିତ୍ୟ କ୍ଷେତ୍ରରେ ଏହାର ଅନୁଧ୍ୟାନ, ବ୍ୟାଖ୍ୟା କରିବା 'ସଂସ୍କୃତି' ସଚେତନ ଓ 'ସାହିତ୍ୟ ସମୀକ୍ଷକ'ଙ୍କର ଏକ ପ୍ରଧାନ କାର୍ଯ୍ୟ ରହି ଆସିଛି । ଏହି 'ସଚେତନତା' ଓ 'ସମୀକ୍ଷା' କାଳକ୍ରମେ ଏକ 'ତାତ୍ତ୍ୱିକତା'ର ଧାରା ସୃଷ୍ଟି କରି ସାରିଛି । ଆଧୁନିକତାର ଅନୁପ୍ରବେଶ ପୂର୍ବରୁ ଆଞ୍ଚଳିକ, ଭାଷାଗତ, ଲିଙ୍ଗଭେଦ, ଜାତି, ଶ୍ରେଣୀ, ଧର୍ମଧାରଣା, ବିଶ୍ୱାସ ଆଦି ଅନେକ କ୍ଷେତ୍ରରେ ଏହାର ମୂଳ ଆବିଷ୍କାର କରିବା ଆବଶ୍ୟକ ।

ସେ କାଳରୁ ଏବର ଜଗତୀକରଣ ପର୍ଯ୍ୟାୟରେ ଏହା ବିଭିନ୍ନ ଭାବରେ, ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚିତ ହୋଇ ଆସିଛି । କିନ୍ତୁ ''ରାଷ୍ଟ୍ରୀୟତାବାଦ''ର ପ୍ରସାର ପରେ(ଫରାସୀ ବିପ୍ଳବ ପରେ) ଏହା, ''ରାଷ୍ଟ୍ରୀୟତା''ର ଉତ୍ତରଣ କ୍ଷେତ୍ରରେ ବିଶେଷ ଭୂମିକା ଗ୍ରହଣ କରିଛି । ଏହି ପର୍ଯ୍ୟାୟରେ ଭାଷା, ସ୍ୱଧର୍ମ, ଶୈଳୀ, ବିଷୟବସ୍ତୁ ନିର୍ବାଚନ ଆଦିରେ କିଛି ପରିମାଣରେ 'ଅତୀତ ପ୍ରୀତି'କୁ ଏକ ''ମାନକ'' ଭାବରେ ଗ୍ରହଣ କରି, ସେହି ଧାରଣାକୁ ଦୃଢ଼ତର କରିବା ପାଇଁ ସମାଜ ଜୀବନ ଓ ତା'ର ବିଭିନ୍ନ ଧାରା, ଉପଧାରା, ସାଂସ୍କୃତିକ ପୁନର୍ଗଠନ କ୍ଷେତ୍ରରେ ବିଭିନ୍ନ ଭାବରେ ପ୍ରାଧାନ୍ୟ ଲାଭ କରିଛି । 'ରାଷ୍ଟ୍ରୀୟତାବାଦ' ଯେତିକି ଯେତିକି ଦୃଢ଼ ହେବାର ଆଭିମୁଖ୍ୟ ଗ୍ରହଣ କରିଛି, ଗୋଷ୍ଠୀଗତ, ଶ୍ରେଣୀ/ଜାତିଗତ ଓ ଧର୍ମଧାରଣା ଜନିତ ବିଭିନ୍ନତା, ଭାଷାଗତ ପାର୍ଥକ୍ୟ ଆଦି ସେତିକି ପରିମାଣରେ ''ସାହିତ୍ୟ ଆଲୋଚନା'' ଓ ସଂସ୍କୃତିର ''ଅଭିଚର୍ଚ୍ଚା'' (ଏଠାରେ ''ଅଭିଚର୍ଚ୍ଚା''କୁ ଇଂରାଜୀ Discourse ପ୍ରତ୍ୟୟର ପରିଭାଷା ଭାବରେ ଗ୍ରହଣ କରାଯାଇଛି)କୁ 'ତାତ୍ତ୍ୱିକତା' ସୃଷ୍ଟି କରିବାରେ ସାହାଯ୍ୟ କରିଛି । ଇଂରାଜୀରେ ଯାହାକୁ "Theory of Discourse" କୁହାଯାଇଥାଏ, ତା'କୁ ଭାବାନ୍ତର କଲେ ଏହା ହେବ ''ଅଭିଚର୍ଚ୍ଚା''ର 'ତତ୍ତ୍ୱ' । ଏଥିରୁ ମନେ ହେଉଛି ଯେ ଏହି ''ଅସ୍ମିତା'' ବା ''ଆତ୍ମ ପରିଚିତ'' ପ୍ରତ୍ୟୟଟି ସମୀକ୍ଷକ ବା 'ଚର୍ଚ୍ଚା-ବିଶାରଦ' ମାନଙ୍କ ପକ୍ଷରେ ଏକ ''ବୌଦ୍ଧିକ ସଂକଟ'' ସୃଷ୍ଟି କରି ସାରିଛି । କାରଣ କୌଣସି 'ଅଭିଚର୍ଚ୍ଚା'ରେ ଯେତେବେଳେ 'ସ୍ଥିରତା', 'ମାନକତା', ସଂହତି ରୂପର ଅସହାୟତା ଜନିତ ସଂକଟ ସୃଷ୍ଟି ହୋଇଥାଏ, ସେତେବେଳେ 'ସମୀକ୍ଷକ' ବା 'ଚର୍ଚ୍ଚା ବିଶାରଦ'ଙ୍କ କ୍ଷେତ୍ରରେ 'ଅଭିଜ୍ଞତା'ର ଆଶ୍ରୟ ନେବା ଛଡ଼ା ଅନ୍ୟ ଉପାୟ ନଥାଏ । ପୁସ୍ତକ ଜ୍ଞାନ ଓ କ୍ଷେତ୍ରଜ ଜ୍ଞାନର ତୁଳନାତ୍ମକ ଅନୁଭବ ସମୀକ୍ଷକ/ଚର୍ଚ୍ଚା ବିଶାରଦଙ୍କର 'ସନ୍ଦେହ' ଓ

'ଅନିଶ୍ଚିତତା'କୁ ଦୃଢ଼ୀଭୂତ କରିଥାଏ । ଅର୍ଥାତ୍ କେଉଁ ''ତତ୍ତ୍ୱ''ଟି ଚର୍ଚ୍ଚା/ସମୀକ୍ଷା ପାଇଁ ଗ୍ରହଣ କରିବା ଆବଶ୍ୟକ ତାହା ଦ୍ୱନ୍ଦ୍ୱ ସୃଷ୍ଟି କରିଥାଏ ।

ଏହା ହିଁ ''ସନ୍ଦେହ'' ଓ 'ଅନିଶ୍ଚିତତା'ର ପ୍ରଧାନ କାରଣ ବୋଲି ମନେହୁଏ । ଯେହେତୁ 'କାଳ' ଓ 'ମହାକାଳ' (Time and Eternity) ମଧ୍ୟରେ ଥିବା ବ୍ୟବଧାନ, ସାମାଜିକ ପରିବେଷ୍ଟନୀ (Context) ଓ ଚରିତ୍ର/ନାୟକ (ବା ନାୟକ/ନାୟିକା) ଗୁଡ଼ିକଙ୍କର ଦେଶ, କାଳ, ପାତ୍ରର ସୀମା ଭିତରେ ଅହରହ ପରିବର୍ତ୍ତନ ଘଟୁଥାଏ । ତାହା 'ସନ୍ଦେହ ଓ ଅନିଶ୍ଚିତତାକୁ' ବଢ଼େଇବାରେ ସାହାଯ୍ୟ କରିଥାଏ । ତେଣୁ 'ରୁଚି'ର ପରିବର୍ତ୍ତନ ଘଟେ, କାଳର ପରିବର୍ତ୍ତନ (ସରଳ ରୈଖିକ ହେଉ ବା 'ଚକ୍ରବତ୍' ହେଉ) ପରିପ୍ରେକ୍ଷୀରେ, ତାତ୍ତ୍ୱିକତା କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ଘଟିଥାଏ । ଏହି ତାତ୍ତ୍ୱିକତା - ଐତିହାସିକ ପୁନର୍ଗଠନ, ଭାଷାତାତ୍ତ୍ୱିକ ନୂତନ ଜ୍ଞାନ, ଆପେକ୍ଷିକତା (relativism), ବିଶ୍ୱଜନନୀତା (universalisation), ପିଣ୍ଡ (ଭୌତିକ), ବ୍ରହ୍ମାଣ୍ଡ (ଆଧ୍ୟାତ୍ମିକ) ତତ୍ତ୍ୱ ମଧ୍ୟରେ ଅହରହ ପରିବର୍ତ୍ତନର ସମ୍ମୁଖୀନ ହୋଇଥାଏ ।

ତେଣୁ କୌଣସି ଏକ ନିର୍ଦ୍ଦିଷ୍ଟ 'ସାହିତ୍ୟ' ବା 'ଅଭିବ୍ୟକ୍ତି'ରେ ସେହି 'ପ୍ରତ୍ୟୟ'ଟି (Concept) କେବେଠାରୁ ଗୃହୀତ ହେଲା, ଯେପରି ରାଧାନାଥ ରାୟଙ୍କ କାବ୍ୟରେ ଅସ୍ମିତା ପ୍ରଥମେ ଗୃହୀତ ହୋଇଛି, ବୋଲି ''ମୋର'' ଧାରଣା । ଏହା ପୂର୍ବରୁ ଯଦି ଏହି ''ଶବ୍ଦ'' ଏକ ପ୍ରକାର ଅର୍ଥ ଥାଇ ଅନ୍ୟ ଭାବରେ ''ବ୍ୟବହୃତ'' ତେବେ ଏହାର ''କ୍ରମାନ୍ୱୟତା''କୁ ଲକ୍ଷ୍ୟକରି, ସେହି ଦୃଷ୍ଟିରୁ ଆଲୋଚନାର 'ସୀମା' (କାଳର ସରଳ ରୈଖିକ ଧାରାରେ) ଓ ସରହଦକୁ ସ୍ଥିର କରିବାକୁ ପଡ଼ିବ । ତାହା ହିଁ ସମୀକ୍ଷକ/ବା ''ଅଭିଚର୍ଚ୍ଚା ବିଶାରଦ'' କେଉଁ ''ତାତ୍ତ୍ୱିକ ଧାରାରେ'' ବିଶ୍ଳେଷଣ କରିବ ଓ ତାହା ''ସାମଗ୍ରିକ ଭାବରେ'' ଏକ ନିର୍ଦ୍ଦିଷ୍ଟ ସାହିତ୍ୟର ଗତିପ୍ରବାହରେ ''ମାର୍ଗନିର୍ଦ୍ଦେଶକ-ରଚନା''କୁ ଦୃଷ୍ଟାନ୍ତ ଭାବରେ ନେବାକୁ ହେବ । ଏହି ''ମାର୍ଗ-ନିର୍ଦ୍ଦେଶକ'' କୃତିଗୁଡ଼ିକ ମଧ୍ୟରେ ବହୁ ସାମ୍ୟ ଓ ବୈଷମ୍ୟ ଥିଲେ ମଧ୍ୟ କେବଳ ''ଅସ୍ମିତା''/ଆତ୍ମ-ପରିଚିତିର ଅନୁଧ୍ୟାନ ପାଇଁ ଏହି ମାର୍ଗ ନିର୍ଦ୍ଦେଶକ ଗ୍ରନ୍ଥ ବା ରଚନାରୁ 'ଦୃଷ୍ଟାନ୍ତ'ଗୁଡ଼ିକୁ ନେବା ଆବଶ୍ୟକ ।

ତେଣୁ 'ଚର୍ଚ୍ଚା ବିଶାରଦ' ବା ସମୀକ୍ଷକ ଏକ ନିର୍ଦ୍ଦିଷ୍ଟ ସମାଜର, ନିର୍ଦ୍ଦିଷ୍ଟ ସମୟର ସାହିତ୍ୟକୃତିକୁ ବିଶ୍ଳେଷଣ କଲାବେଳେ, ''ସାମାଜିକ ଓ ଆର୍ଥିକ'' ବିକାଶରେ ତାହାର ପ୍ରାଧାନ୍ୟ ଖୋଜିବାକୁ ହେବ । ତେଣୁ 'ଅସ୍ମିତା' ପ୍ରତ୍ୟୟର ପ୍ରବାହମାନତା ଜାଣିବା ପାଇଁ ସୀମକ୍ଷକ/ଚର୍ଚ୍ଚା ବିଶାରଦ ନିକଟରେ ମାତ୍ର ଦୁଇଟି ଚାବିକାଠି ରହିଛି - (୧)ସାମାଜିକ ବିକାଶର ଧାରା (୨) ଆର୍ଥିକ ବିକାଶର ଧାରା । ପୁଣି ଏହି ଦୁଇଟି

ଧାରା ଅନ୍ତରାଳରେ ''ଅର୍ଥନୈତିକ ଅସାମ୍ୟ'' ଯେ ''ରାଜନୈତିକ ସଂଘର୍ଷର'' ହେତୁ ତାହା ବିଚାରକୁ ନେବାକୁ ହେବ । ତେଣୁ ସାମାଜିକ/ଆର୍ଥିକ ବିକାଶ ଉଣା ଅଧିକେ ''ଅର୍ଥନୈତିକ ଅସାମ୍ୟ'' ଓ ''ରାଜନୈତିକ ସଂଘର୍ଷ'' ଉପରେ ନିର୍ଭର କରୁଥିବାରୁ, ହେତୁବାଦୀ ସାହିତ୍ୟ-ସ୍ରଷ୍ଟା ଓ ସୃଷ୍ଟିର-ସମୀକ୍ଷକ ଉଭୟେ ''ହେତୁବାଦୀ'' ତାତ୍ତ୍ୱିକତାକୁ ପ୍ରାଧାନ୍ୟ ଦେବା ସମ୍ଭବ । ଅପର ପକ୍ଷରେ ''ଇଶ୍ୱର ବିଶ୍ୱାସୀ'' (ଏଇଠି ''ମହାକାଳ''ର ଦର୍ଶନ ଲକ୍ଷ୍ୟ କରାଯାଇପାରେ) ସ୍ରଷ୍ଟା ଓ ସୃଷ୍ଟିର ସମୀକ୍ଷକ ସେମାନଙ୍କର ସମୀକ୍ଷା ପାଇଁ ଅନୁରୂପ ''ଇଶ୍ୱରବାଦୀ'' ଦୃଷ୍ଟାନ୍ତ ଲୋଡ଼ିଥାନ୍ତି (ଯେପରି ପ୍ରଥମଟିରେ ଅନ୍ନ ବିହୁନେ ହଂସ ହାନି, ଯୋଗ ସାଧିବୁ କାହା ଘେନି ଦୃଷ୍ଟାନ୍ତ ସେହିପରି ଦ୍ୱିତୀୟଟିରେ କଳ୍ପନା ମୁଳେ କାଳ ଥାଇ ପ୍ରାଣୀ ତ ଜାଣି ନ ପାରଇ - ଦୃଷ୍ଟାନ୍ତ ରହିଛି) । ଏଠି ''ପ୍ରଗତିବାଦୀ'' (Progressiveର ସରଳରୈଖିକ ଦର୍ଶନ) ଓ ''ଚକ୍ରବତ୍ ପରିବର୍ତ୍ତନ୍ତେ ସୁଖାନି ଚ ଦୁଃଖାନି ଚ'' (cyclical ଦର୍ଶନ ରହିଛି) । ଏଇଥିରୁ ତାତ୍ତ୍ୱିକତାର ଧାରାକୁ ବିଚାରକୁ ନେବାକୁ ହେବ ।

୧୯୪୭ ମସିହାରେ 'ଭାରତରେ ରାଷ୍ଟୀୟତା'ର ଯେଉଁ ନୂତନ 'ଅସ୍ମିତା' ସୃଷ୍ଟି ହେଲା, ତା'ର ନାମ ହେଲା ''ରାଷ୍ଟ୍ରୀୟତାବାଦ'' ବା ''ଭାରତୀୟ ସଂହତି''/ ରାଷ୍ଟ୍ରୀୟ (ଜାତୀୟ) 'ସଂହତି' । ଏଥିରୁ ଧାରଣା କରିବା ଭୁଲ ହେବ ନାହିଁ ଯେ ପୂର୍ବରୁ ଯେଉଁ ''ଭାରତବର୍ଷ'' ତାହା ଏକ ''ଭୌଗୋଳିକ ଭୂଖଣ୍ଡ'' ଥିଲେ ମଧ୍ୟ ଓ ''ଅଧିକାଂଶ'' ଭାରତବାସୀ ''ବେଦ-ବେଦାନ୍ତ-ଉପନିଷଦ-ପୁରାଣ ଆଦି'' ବର୍ଣ୍ଣିତ ଧର୍ମଦ୍ୱାରା ପରିଚାଳିତ ହେଉଥିଲେ ମଧ୍ୟ ସେ ପରିଚିତି/ଅସ୍ମିତା ଥିଲା -''ଧର୍ମର ସଂହତି'' (ବିଭିନ୍ନ ଭାଷାଭାଷୀ, ଗୋଷ୍ଠୀ ହେଲେ ମଧ୍ୟ) । ଏଇଥିରୁ ''ହିନ୍ଦୁ'' ଓ ପରେ ''ହିନ୍ଦୁତ୍ୱ'', ହିନ୍ଦୁଧର୍ମ ଆଦି କାଳକ୍ରମେ ନୂତନ ''ଅସ୍ମିତା'' ସୃଷ୍ଟି କଲା । କିନ୍ତୁ ପୂର୍ବର ସମସ୍ତ ପ୍ରକାରର ''ଅସ୍ମିତା'' ''ରାଷ୍ଟ୍ରୀୟବାଦର'' ଅସ୍ମିତା ମଧ୍ୟରେ ପରିପ୍ରକାଶ ଲଭିଲା ଓ ସେଇଥିରୁ ''ପ୍ରାଦେଶିକତା''ରୂପକ ଅସ୍ମିତା, ''ରାଜ୍ୟର (state)ଅସ୍ମିତା'' ପୁଣି ''ଆଞ୍ଚଳିକ ଅସ୍ମିତା'' ଭାବରେ ରୂପ ପରିଗ୍ରହ କଲା । ଏହା ''ସାହିତ୍ୟ ଓ ଅଭିବ୍ୟକ୍ତିରେ'' ପ୍ରକାଶ ପାଇବାରେ ଲାଗିଲା । ଏଠାରେ ''ଭାଷାଗତ'' ଅସ୍ମିତାର ବିଚାର କରୁନାହିଁ । ଓଡ଼ିଶାରେ ତାହା ପ୍ରାୟ ୧୯୦୨ରୁ ୧୯୩୬ ମଧ୍ୟରେ ବିଭିନ୍ନ ଭାବରେ ପ୍ରକାଶ ପାଇଛି ଓ କେତେବେଳେ ''ସ୍ୱତନ୍ତ୍ରତା'' ବଜାୟ ରଖିବାକୁ ଚେଷ୍ଟା କରିଥିଲେ ମଧ୍ୟ (ମଧୁସୂଦନ ଦାସ) ଅନ୍ୟ କେତେବେଳେ, ''ଭାରତୀୟତା'' ମଧ୍ୟରେ ରୂପ ପରିଗ୍ରହ କରିବାକୁ ଚେଷ୍ଟା କରିଛି (ଗୋପବଂଧୁ ଦାସ) । ତେଣୁ ''ଭାରତୀୟ

ଅସ୍ମିତା'' ଏକ ପ୍ରଶାସନିକ ଓ ଆଇନ୍‌ଗତ ପରିଚିତି ହେଲେ ମଧ୍ୟ ''ଭାଷାଭିତ୍ତିକ'' ଅସ୍ମିତା କ୍ରମଶଃ ବଢ଼ି ବଢ଼ି ଚାଲିଛି । ଏଇ ଭାବରେ ଦେଖିଲେ, ଏବେ ସ୍ୱୀକୃତ ''ସାନ୍ତାଳୀ'' ଅସ୍ମିତା ସହିତ କୋଶଲୀ, ସମ୍ବଲପୁରୀ, ଆଦିର ନୂତନ ସ୍ୱର ଦେଖାଦେଇଛି । କେବଳ ଓଡ଼ିଶାରେ ବା ଭାରତବର୍ଷରେ ନୁହେଁ-ୟୁରୋପରେ ଏହି ଭାଷା ଓ ଧର୍ମଗତ ବିଭେଦ, ପୁଣି ''ସାମ୍ୟବାଦ''ରୁ ମୁକ୍ତି ଲଭିଥିବା ରାଷ୍ଟ୍ରମାନଙ୍କରେ 'ଜଗତୀକରଣ'ର ପ୍ରଭାବରେ ନୂତନ ଅସ୍ମିତା ସୃଷ୍ଟି ହେଉଛି । ତେଣୁ ''ଅସ୍ମିତା''କୁ ଭିତ୍ତିକରି ଏତେ ''ଚର୍ଚ୍ଚା'' ଓ ''ସମୀକ୍ଷା'' ହୋଇଛି ଯେ ତାହା ବିଚାରକୁ ନ ନେଲେ 'ଓଡ଼ିଶାର'/'ଓଡ଼ିଆ' ଅସ୍ମିତାକୁ ବୁଝିବା କଷ୍ଟକର ହୋଇପାରେ । କାରଣ ଏବେ ''ଦେଶାନ୍ତରୀ'' (Diaspora) ମାନଙ୍କର ସଂସ୍କୃତି ଓ ସାହିତ୍ୟ ମଧ୍ୟ ସୃଷ୍ଟି ହେବାରେ ଲାଗିଛି । 'ସଂକୀର୍ଣ୍ଣ' ପୃଥିବୀରୁ ଏବେ ଆମେ ଏକ 'ସଂପ୍ରସାରଣଶୀଳ' ଓ 'ମୁକ୍ତ' ଜଗତର ବାସ କରୁଛୁ । ଏବେ 'ଗୋଷ୍ଠୀଗତ' (ethnic) 'ଅସ୍ମିତା' ସାହିତ୍ୟକୁ ମଧ୍ୟ ପ୍ରଭାବିତ/ଅନୁପ୍ରାଣିତ କରି ସାରିଲାଣି । ଦୃଷ୍ଟାନ୍ତ ସ୍ୱରୂପ ୧୯୭୩ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାରେ ୯ମ ଆନ୍ତରାଷ୍ଟ୍ରୀୟ ମାନବ ବିଜ୍ଞାନ ଓ ଗୋଷ୍ଠୀ ବିଜ୍ଞାନ ଆଲୋଚନା ଚକ୍ରରେ ଏକ ଅଧିବେଶନରେ ଅଧ୍ୟକ୍ଷତା କରି ମୁଁ ବହୁ ରାଷ୍ଟ୍ରର ଗବେଷକମାନଙ୍କର ପ୍ରବନ୍ଧର ଏକ ସଂକଳନ ଓ ସଂପାଦନା କରିଥିଲି । ଏହା ଗ୍ରନ୍ଥ ଆକାରରେ *Community, Self and Identity* ନାମରେ ୧୯୭୮ ରେ ପ୍ରକାଶ ପାଇଥିଲା । ସେ ''ଆଲୋଚନା ଚକ୍ର''ରେ ଯେଉଁସବୁ ପ୍ରଶ୍ନ ମତେ ଆନ୍ଦୋଳିତ କରୁଥିଲା - ଏବେ ଓଡ଼ିଶାରେ, ଓଡ଼ିଶାର ସଂସ୍କୃତି ଓ ସାହିତ୍ୟରେ ସେ ସବୁ ପ୍ରଶ୍ନ ଉତ୍ଥାପିତ ହେଉଛି - କିଂତୁ ଏହା ଏକ ''ତାତ୍ତ୍ୱିକତା'' ସୃଷ୍ଟି କରି ପାରିନାହିଁ । ଜର୍ମାନ ଗବେଷକମାନେ ''ଜଗନ୍ନାଥ''ଙ୍କୁ ନେଇ ଯେଉଁସବୁ ଗ୍ରନ୍ଥ ରଚନା କରିଛନ୍ତି, ସେଥିରୁ ଓଡ଼ିଶାର 'ସାଂକେତିକ ଅସ୍ମିତା' ଭାବରେ ''ଜଗନ୍ନାଥ'' ତାତ୍ତ୍ୱିକତା କ୍ଷେତ୍ରରେ ଉଭା ହୋଇଛନ୍ତି ।

ତେଣୁ 'ସାଂପ୍ରତିକ କାଳରେ' 'ଅସ୍ମିତା'ର ରୂପ, ପ୍ରକାରଭେଦ, ବର୍ଣ୍ଣନା ଓ ବ୍ୟାଖ୍ୟା ବଦଳିବାରେ ଲାଗିଛି । ଖାରବେଳ ବା ଅଶୋକ ବା ମଧୁସୂଦନଙ୍କର 'ଅସ୍ମିତା' ଏବେ ଯୁବମାନସକୁ ଅନୁପ୍ରାଣିତ କରି ପାରୁନାହିଁ । ଅବଶ୍ୟ ''ଇତିହାସ''ର ମହାନ ବ୍ୟକ୍ତି ଭାବରେ ଏମାନଙ୍କର କାର୍ଯ୍ୟକ୍ରମ ଆଂଶିକ ଭାବରେ 'ଅସ୍ମିତା'ର ଐତିହାସିକ ଦିଗନ୍ତକୁ ଉନ୍ମୋଚିତ କରିପାରେ । କିଂତୁ ଜଗତୀକରଣ ପ୍ରକ୍ରିୟାରେ ଏବେ ପ୍ରଥମ, ଦ୍ୱିତୀୟ, ତୃତୀୟ ବିଶ୍ୱ ଭିତରେ ଥିବା ସୀମାରେଖା ସଙ୍କୁଚିତ ବା ଲୋପ ପାଇବାକୁ ବସିଛି । ତେଣୁ ବି.ବର୍ମାଙ୍କର ''ଓଡ଼ିଆ ବଧୂ''ର ଚିତ୍ର ଏବେ ଓଡ଼ିଆ ନାରୀମାନଙ୍କର

ଅସ୍ମିତା ହୋଇ ପାରୁନାହିଁ । ସେହିପରି ସାମ୍ପ୍ରଦାୟିକତା କ୍ଷେତ୍ରରେ ''ବିବାହ-ଅନୁଷ୍ଠାନ'', ''ପତି ପରମ ଗୁରୁ'', ''ଏକ ନାରୀ ବ୍ରତ'', ''ସ୍ୱକୀୟା-ପରକୀୟା'' ଭଳି ଭାଷା ବା ଶବ୍ଦ ସମୂହ ଯେଉଁ ''ଅସ୍ମିତା'' ସୃଷ୍ଟି କରିପାରୁଥିଲା, ତାହା ଏବର ଯୁବମାନସକୁ ସାମଗ୍ରିକ ଭାବରେ ଆନ୍ଦୋଳିତ କରିପାରୁନାହିଁ । ବିଜ୍ଞାନ/ପ୍ରଜ୍ଞାନ ସମ୍ମତ ଅସ୍ମିତା ମଧ୍ୟରେ ମାନସିକ ସ୍ତରରେ ଏକ 'ଶୀତଳଯୁଦ୍ଧ' ଆରମ୍ଭ ହୋଇ ସାରିଛି । ବେଶଭୂଷା, ଆଦବ କାଏଦା, ସମ୍ବୋଧନ ରୀତି, ବ୍ୟବହାର, ଭଙ୍ଗୀ, ଚାହାଣୀ ଆଦିରେ ମଧ୍ୟ 'ଅସ୍ମିତା'ର ଚିତ୍ରଣ (ସାହିତ୍ୟରେ ବା ଅଭିବ୍ୟକ୍ତିରେ) ପରିବର୍ତ୍ତିତ ହୋଇ ଚାଲିଛି । ''ସଲଜ୍ଜ ଖାଏ, ନିର୍ଲଜ ବାଏ, ଅତି ବେହିଆ ଯେ ନାଚି ନାଚି ଯାଏ'' । ଯେଉଁ ସମାଜରେ ସଲଜ୍ଜ, ନିର୍ଲଜ, ପୁଣି ''ଅତିବେହିଆ'' ଆଦି ଯେଉଁ ଅର୍ଥର ପରିଭାଷା ହୋଇଥିଲା, ସେହି ସମାଜରେ ''ଗାୟନ, ବାଯନ, କୀର୍ତ୍ତନ'' ଏବେ ସମାଜ ଜୀବନରେ ଆଉ 'ଲଜ୍ଜାକର' ମନେ ହେଉନାହିଁ - ବରଂ ଏହା ଏକ ନୂତନ ଅସ୍ମିତାର ରୂପ ନେଉଛି ।

ତେଣୁ 'ଅସ୍ମିତା'ର ଅର୍ଥ, ଅର୍ଥାନ୍ତର ବୁଝି ବୁଝାଇବାକୁ ହେଲେ, ଅନ୍ତତଃ ଲିଖିତ ସାହିତ୍ୟ କ୍ଷେତ୍ରରେ ସେହିଭଳି ମାର୍ଗଦର୍ଶକ ଗ୍ରନ୍ଥସବୁ ଖୋଜିବାକୁ ପଡ଼ିବ (ତାହା କବିତା ହେଉ, ଗଳ୍ପ ହେଉ ପ୍ରବନ୍ଧ ହେଉ ବା ଉପନ୍ୟାସ ହେଉ) । ଏହା ହିଁ ଅନ୍ତତଃ ଓଡ଼ିଶା ଓ ଓଡ଼ିଆଙ୍କର ଅଭିବ୍ୟକ୍ତିର ଧାରା ଭିତରେ ନିର୍ଦ୍ଦିଷ୍ଟ ସମୟ ଭିତ୍ତିକ କୀର୍ତ୍ତିସ୍ତମ୍ଭ ଭାବେ ବିବେଚିତ ହୋଇପାରିବ । ଏହି ''ଗ୍ରନ୍ଥ ଗୁଡ଼ିକ'' ବାଛିବାକୁ ଓ ''ତାତ୍ତ୍ୱିକତା'' ଦୃଷ୍ଟିରୁ ବିଚାର କରିବାକୁ ''ସମୀକ୍ଷକମାନଙ୍କ'' ମଧ୍ୟରେ ଏକ ଯୋଗସୂତ୍ର ରକ୍ଷା କରି ଏହାକୁ ଏକ ''ନିର୍ଦ୍ଦିଷ୍ଟ ଚିନ୍ତକଗୋଷ୍ଠୀ''ର ଅଭିମତ ଭାବରେ ଗ୍ରହଣ କରିବାକୁ ପଡ଼ିବ । ସବୁ 'ପ୍ରତ୍ୟୟ' ଭଳି ଏହି ''ଚିନ୍ତକ ଗୋଷ୍ଠୀ''ଙ୍କର 'ପ୍ରତ୍ୟୟ' ସୃଷ୍ଟି ମଧ୍ୟ ଚିରସ୍ଥାୟୀ ନୁହେଁ । କାରଣ ଏବର ସମାଜରେ ରୁଚି ଓ ବ୍ୟାଖ୍ୟାର ଦିଗନ୍ତ ମଧ୍ୟ ପ୍ରସାରଣଶୀଳ ହୋଇ ସାରିଛି । ''କାମସୂତ୍ର''ରେ ଯେଉଁ ''ଅସ୍ମିତା'' ସୃଷ୍ଟି ହୋଇଥିଲା, ଏବେ ଟିଭିର ସିରିଆଲ ବା ଚଳଚ୍ଚିତ୍ରରେ ସେ 'ଅସ୍ମିତା'ର ରୂପ ବା ସ୍ୱର ଖୋଜିବା ସମ୍ଭବ ନୁହେଁ । କଳା ଚିତ୍ର ମଧ୍ୟରେ 'ଅସ୍ମିତା' ଭିନ୍ନ ରୂପ ନେଇ ସାରିଛି । ଉତ୍ତର ଆୟାରଲାଣ୍ଡରେ କ୍ୟାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟ ଧର୍ମଧାରଣା ଓ ରାଜନୈତିକ ବିଶ୍ୱାସ ମଧ୍ୟରେ ଚାଲି ଆସିଥିବା ସଂଘର୍ଷରେ ଭିନ୍ନ 'ଅସ୍ମିତା'ର ସ୍ୱର ଦେଖିବାକୁ ମିଳେ । ଠିକ୍ ଅନୁରୂପ ଭାବରେ ଓଡ଼ିଶାରେ, ଓଡ଼ିଆ ସାହିତ୍ୟରେ କରଣ-ବ୍ରାହ୍ମଣ ବା ପାଣ-କନ୍ଧ ବା ସାନ୍ତାଳୀ-ଅଣସାନ୍ତାଳୀ ସଂଘର୍ଷରେ ମଧ୍ୟ ସେହି ଭିନ୍ନ 'ଅସ୍ମିତା'ର ରୂପ ଦେଖିବାକୁ ମିଳୁଛି । ଏପରିକି ନୂଆପଡ଼ାର ''ପହରିଆ'' ଓ ''ମହାସମୁଦ'' ଜିଲ୍ଲାର (ଛତିଶଗଡ଼)

''କମାର'' ଦୁଇଟି ସ୍ୱତନ୍ତ୍ର 'ଜାତି' ଭାବରେ ଗୃହୀତ ହୋଇଥିଲେ ବି ସେମାନଙ୍କ ଭିତରେ ଥିବା ''ସାଂସ୍କୃତିକ'' ଓ ମୌଖିକ ପରଂମ୍ପରାରେ ଥିବା ''ଅଭିନ୍ନ ଅସ୍ମିତା'' ଏବେ ବି ଲକ୍ଷ୍ୟ କରାଯାଇ ପାରେ । ''ଖାଦ୍ୟ ସଂସ୍କୃତି''ରେ ବି 'ଅଭଡ଼ା' ଯେଉଁ ଅସ୍ମିତା ଜାଗ୍ରତ କରେ, କେକ୍, ପିଜ୍ଜା, ସେହି 'ଅସ୍ମିତା' ଜାଗ୍ରତ କରେ ନାହିଁ । ''ପଖାଳ-ଖିଆ'' ଓଡ଼ିଆ, ବା ''ଓଡ଼ିଆ ମେଣ୍ଢା'' ଯେଉଁ ଭାବବ୍ୟକ୍ତ କରୁଥିଲା ଏବର ଓଡ଼ିଆ ବଂଶଧରମାନେ ସେହି ''ଓଡ଼ିଆମିର'' ସଂକେତ ତ୍ୟାଗ କରିସାରିଲେଣି । ତେଣୁ 'ଅତୀତ ପ୍ରୀତି' (Nostalgia) ''ଅସ୍ମିତା''କୁ ସମୃଦ୍ଧ କରିପାରେ ନାହିଁ । ଏହା ସାମୟିକ ଭାବରେ ''ଭାବ-ପ୍ରବଣତା'' ଜନିତ ମନୋଭାବ, କିଂବା ''ଅହେତୁକ ଇତିହାସ ପ୍ରୀତି''ର ସ୍ୱାକ୍ଷର ବହନ କରିପାରେ—କିନ୍ତୁ ଏହା ବି ଏକ 'କାଳର' ଅସ୍ମିତା, କଳ୍ପନାର 'ଅସ୍ମିତା', 'ବାସ୍ତବତାର' ନୁହେଁ । ''କଳ୍ପନା ମୂଳେ କାଳ ଥାଇ''ର ଅସ୍ମିତା ସାହିତ୍ୟରେ ଏକ କଳ୍ପନାର ବିଷୟ ହେଲେ ମଧ୍ୟ ତାହା ପଛରେ ଏକ ''ସମୟ /କାଳ'' ରହିଛି । ସେହି 'କାଳ'କୁ ପ୍ରାଣୀ ବୁଝି ନପାରିଲେ, 'ଅସ୍ମିତା'କୁ ବୁଝିବା ବା ଜାଣିବା ସମ୍ଭବ ନୁହେଁ । ତେଣୁ ଦାର୍ଶନିକ ବ୍ୟାଖ୍ୟା ''ଏକକ ଅସ୍ମିତା'' କଥା କହିଲାବେଳେ ପରିସଂଖ୍ୟାନଗତ ବାଖ୍ୟା ''ବହୁ ଅସ୍ମିତା''ର ରୂପ ଥୋଇଥାଏ । ଏହି ''ଏକତ୍ୱ''ର ଧାରଣା ''ଅସ୍ମିତାର'' ଚର୍ଚ୍ଚା କ୍ଷେତ୍ରରେ ଆଉ ଉନ୍ମାଦନା ସୃଷ୍ଟି କରୁନାହିଁ । ଏବେ ତାହା ''ବହୁତ୍ୱର'' ଅନୁସନ୍ଧାନରେ ବ୍ରତୀ । ତେଣୁ ଏବର ''ଚର୍ଚ୍ଚା-ବିଶାରଦ'' ବା ସମୀକ୍ଷକଙ୍କ ମଧ୍ୟରେ ଭାଷା ଓ ସଂସ୍କୃତିଗତ ''ଅସ୍ମିତା'' ମଧ୍ୟରେ ''ଭିନ୍ନତା''ର ଏକ ''ତରଳ'' ମନୋଭାବ ସୃଷ୍ଟି କରି ସାରିଛି । ତେଣୁ ''ଓଡ଼ିଶା ସାହିତ୍ୟର ଗ୍ରନ୍ଥାଗାରରେ'' ଆଞ୍ଚଳିକ ସାହିତ୍ୟ, ଭାଷା, ବ୍ୟାକରଣ, ସାଂକେତିକତା ଆଦି ବିଶେଷ ଭାବରେ ସୃଷ୍ଟି ପ୍ରକ୍ରିୟାକୁ ଆନ୍ଦୋଳିତ କରୁଥିବାରୁ, ''ଅତୀତ'' ଓଡ଼ିଶାର ''ଅସ୍ମିତା'' ଏବେ ଅନୁସରଣୀୟ ହୋଇପାରୁନାହିଁ - କାଲିର 'ଆଦର୍ଶ' ଆଜିର ଅନାଦର୍ଶରେ ପରିଣତ ହୋଇଛି । ତେଣୁ ଏକ ନିର୍ଦ୍ଦିଷ୍ଟ ସମାଜର ସାହିତ୍ୟ, ଭାବ ସମ୍ପଦ, ଭାଷା ସମୂହ ସମାଜର ''ଅର୍ଥନୈତିକ ଓ ରାଜନୈତିକ'' ଅବସ୍ଥାର ଚିତ୍ରକୁ ଅସ୍ୱୀକାର କରି ଅସ୍ମିତା ସଂପର୍କରେ ''ଦୃଢ଼ ମନୋଭାବ'' ସୃଷ୍ଟି କରିପାରିବ ନାହିଁ । ତେଣୁ ଏବର ସମୀକ୍ଷକମାନଙ୍କ ନିକଟରେ 'ଅସ୍ମିତା' ଏକ ସ୍ଥାୟୀ ସମ୍ପଦ ନୁହେଁ - ବରଂ ଅହରହ ପରିବର୍ତ୍ତିତ ଏକ ମାର୍ଗଦର୍ଶୀର ସଂକେତ ମାତ୍ର ।



# ଅନ୍ତରୀକ୍ଷ-ପ୍ରଜ୍ଞାନ ନାରୀବାଦ
# (Cyber Feminism)

'Cyber' ଶବ୍ଦଟିର ଓଡ଼ିଆ ପାରିଭାଷିକ ଶବ୍ଦ ସୃଷ୍ଟି କରାଯାଇନାହିଁ - ଏହା ''ଅନ୍ତରୀକ୍ଷ'', ବା "Etherial" ବା ''ସ୍ୱର୍ଗ-ମର୍ତ୍ତ୍ୟ'' ମଧ୍ୟବର୍ତ୍ତୀ ଏକ ସ୍ଥାନ ଭାବରେ ନିରୂପଣ କରାଯାଇପାରେ - ତେଣୁ ଏହାକୁ ''ଅନ୍ତରୀକ୍ଷ-ପ୍ରଜ୍ଞାନ'' ପରିଭାଷାରେ ବ୍ୟକ୍ତ କରାଯାଇପାରେ । ପରାଧୁନିକ କାଳରେ ସମକାଳିନ ବିଜ୍ଞାନ ଓ ପ୍ରଜ୍ଞାନ (Technology ର ପରିଭାଷା ଭାବରେ ବ୍ୟବହୃତ)ର ପ୍ରସାର ଘଟିଆସିଛି । ଏହା ବର୍ତ୍ତମାନର ନାରୀମାନଙ୍କ ମଧ୍ୟରେ ବିଶେଷ ଭାବରେ ଲେଖିକାଙ୍କର ଆଗ୍ରହ ସୃଷ୍ଟି କରିଛି । ଏ ମଧ୍ୟରେ ଇଲେକଟ୍ରୋନିକ୍ ଜ୍ଞାନର ବ୍ୟବହାର ଫଳରେ, ଏ କ୍ଷେତ୍ରରେ ନାରୀମାନଙ୍କର ଅବଦାନ ଅଧିକ ଦୃଷ୍ଟି ଆକର୍ଷଣ କରିଛି । ଏହା ନାରୀମାନଙ୍କ ମଧ୍ୟରେ ଉଭୟ ବିଜ୍ଞାନ ଓ ପ୍ରଜ୍ଞାନ କ୍ଷେତ୍ରରେ ଏକ ଅବଦମିତ ପ୍ରତିଭାକୁ ଉତ୍ସାହ ଯୋଗାଇ ଆସିଛି (ଯେପରି DTP, BPO, Electronic goods ଠାରୁ ଏହି ଯନ୍ତ୍ରପାତିର ଉଦ୍ଭାବନ ଓ ବ୍ୟବହାର କ୍ଷେତ୍ରରେ) । ଏହି ଅଭିନବ ସୃଷ୍ଟି ପ୍ରକ୍ରିୟାରେ ନାରୀମାନେ କ୍ରମେ ବହୁଳ ଭାବରେ ନିଯୁକ୍ତିର ସୁଯୋଗ ପାଉଛନ୍ତି । ତାହା "Internet" ର ବିଭିନ୍ନ ବ୍ୟବହାର କ୍ଷେତ୍ରରେ ନାରୀମାନଙ୍କର ସହଜଜ୍ଞାନ (Intution)କୁ ଉପାଦାନ ଭାବରେ ଗ୍ରହଣ କରାଯାଇଛି (ଯେପରି Computer Accounting Package ଠାରୁ Pilot ହେବା ପର୍ଯ୍ୟନ୍ତ ଆଗ୍ରହ ଓ ସେହିପରି Military ଓ Political Posting ରେ ମଧ୍ୟ ) । ନାରୀ-ପ୍ରତିଭା ରାଜନୀତି ଓ କ୍ଷମତା କେନ୍ଦ୍ରର ଉର୍ଦ୍ଧ୍ୱକୁ ଯାଇ ସାରିଛି । ପୁଣି ପ୍ରଜନନ ପ୍ରକ୍ରିୟାର ନିୟନ୍ତ୍ରଣ ମଧ୍ୟ ଅନେକ ଉପାଦନାର ବ୍ୟବହାର, ''ସାଇବର-ନାରୀବାଦ''କୁ ପ୍ରଭାବିତ କରୁଛି । ଏସବୁ ସତ୍ତ୍ୱେ ଏହା ଦୃଢ଼ତାର ସହିତ କୁହାଯାଇପାରେ ଯେ ''ଅନ୍ତରୀକ୍ଷ-ପ୍ରଜ୍ଞାନ'' ଆଧୁନିକ ସମାଜର ରାଜନୈତିକ ସ୍ଥିତି ଓ କ୍ଷମତା-କେନ୍ଦ୍ର ଦ୍ୱାରା ପରୋକ୍ଷ ଭାବରେ ପ୍ରଭାବିତ । ଯେପରି ''ବସ୍ତୁତାନ୍ତ୍ରିକତା'' ପ୍ରଭାବରେ

''ବସ୍ତୁତାନ୍ତ୍ରିକ-ନାରୀବାଦ''ର ସୃଷ୍ଟି ହୋଇଥିଲା, ସେହିପରି ଭାବରେ ''ଅନ୍ତରୀକ୍ଷ-ପ୍ରଜ୍ଞାନ ଦ୍ୱାରା ପ୍ରଭାବାନ୍ୱିତ ନାରୀବାଦ'' ଏବେ ଜନ ମାନସକୁ —ବିଶେଷ ଭାବରେ ''ଶିକ୍ଷାପ୍ରାପ୍ତ'' ନାରୀମାନସକୁ ଆନ୍ଦୋଳିତ କରୁଛି । ଏହାର ପ୍ରଭାବ ଫଳରେ ମଧ୍ୟ ସ୍ୱାଭାବିକ ଭାବରେ ''ପୁରୁଷ ସମାଜ'' କ୍ରମଶଃ ଏହି ପରିବର୍ତ୍ତିତ ସଂସ୍କୃତି ବା ରୂପାନ୍ତରିତ ସଂସ୍କୃତିକୁ ଆଦରି ନେବାକୁ ଅବସ୍ଥା ସୃଷ୍ଟି ହୋଇ ସାରିଛି । ଏହା ୧ମ, ୨ୟ, ୩ୟ ବିଶ୍ୱ ମଧ୍ୟରେ ଥିବା ''ବିଶ୍ୱଜନୀନ ଦୃଷ୍ଟିଭଙ୍ଗୀ'' ମଧ୍ୟରେ ସମତା ଆଣିବାକୁ ଚେଷ୍ଟା କରୁଛି । ଏପରିକି ପଶ୍ଚିମ ଜଗତରେ ଏହି ''ଅନ୍ତରୀକ୍ଷ-ପ୍ରଜ୍ଞାନ ନାରୀବାଦ''ର ଲେଖିକା ନୂଆ ଧରଣର ''ପ୍ରଜ୍ଞାନ-ଉପନ୍ୟାସ'' ରଚନା ଆରମ୍ଭ କଲେଣି । ଏଠି ନାୟକ ନାୟିକା ଆଉ କଳ୍ପିତ ନୁହଁନ୍ତି - ବରଂ ''ଅନ୍ତରୀକ୍ଷ-ପ୍ରଜ୍ଞାନ''ର 'ହିରୋ' ବା ଧର୍ମପିତା (God Father) । ଅନୁରୂପ ଭାବରେ କେତେକ ଅନ୍ତରୀକ୍ଷ-ପ୍ରଜ୍ଞାନର କଥା/କାହାଣୀ/ ଗଳ୍ପରେ ପୁରୁଷମାନଙ୍କର ଉଦ୍‌ବେଗ, ହତୋତ୍ସାହ ମଧ୍ୟ ରୂପାୟିତ ହେଉଛି । ଏପରିକି ସମୟ ସମୟରେ ନାରୀମାନଙ୍କର ''ଶରୀର''ର ଭିନ୍ନତାକୁ ''ଚଳଚ୍ଚିତ୍ର'' ଜରିଆରେ ଯେ କୌଣସି କାହାଣୀରେ ପ୍ରଦର୍ଶନ କରି ନାରୀମାନସକୁ ଆନ୍ଦୋଳିତ କରୁଛି ।

ସାଂସ୍କୃତିକ ''ତାତ୍ତ୍ୱିକତା''ର ଏହି ''ପରିବର୍ତ୍ତିତ ପ୍ରବାହ'' ଓଡ଼ିଶାର ଲେଖିକା/ ଲେଖକମାନଙ୍କ ମଧ୍ୟରେ ଦୁଇଟି ଶ୍ରେଣୀ ଗଠନ କରୁଥିବାର 'ସୂଚନା' ମିଳୁଛି - ରକ୍ଷଣଶୀଳ ଓ ପରିବର୍ତ୍ତନବାଦୀ । ଏହି ଧାରାକୁ ଅନୁଶୀଳନ କରି ଓଡ଼ିଆ ସାହିତ୍ୟର ସମୀକ୍ଷକମାନେ ''ଅନ୍ତରୀକ୍ଷ-ପ୍ରଜ୍ଞାନ ନାରୀବାଦ'' ସଂପର୍କରେ ସମୀକ୍ଷା କରିବା ଆବଶ୍ୟକ ।



# ଅଧିକାର ଓ ଅର୍ଥ ଶକ୍ତି
# (Rights & its Meaning)

ଅନେକ ବର୍ଷ ତଳେ ରାଜଗୋପାଳଚାରୀ, 'ସ୍ୱତନ୍ତ୍ର' ରାଜନୈତିକ ଦଳ ଗଠନ ସମୟରେ ମୁକ୍ତ ଅର୍ଥନୀତି ଓ ଉଦାରବାଦ ସଂପର୍କରେ ଆଲୋଚନା କରି ଏକ ପୁସ୍ତକ ରଚନା କରିଥିଲେ 'ଅର୍ଥଶକ୍ତି' କବଳରୁ ଗଣତନ୍ତ୍ରକୁ ବଂଚାଅ' । ଏ ଭିତରେ ଗତ କେତେବର୍ଷ ଭିତରେ 'ମୁକ୍ତ ଅର୍ଥନୀତି' ନୀତିଗତ ଦୃଷ୍ଟିରୁ ଗୃହୀତ ହୋଇଛି । ଏବେ କିନ୍ତୁ ସେ ପ୍ରଶ୍ନର ସନ୍ତୋଷଜନକ ସମାଧାନ ହୋଇପାରିନାହିଁ । ତେଣୁ ଅଧିକାର ଉପରେ ଏହି 'ଟଙ୍କା'ର ପ୍ରଭାବ ପ୍ରାୟ ଆଲୋଚନାର କେନ୍ଦ୍ରବିନ୍ଦୁ ରହି ଆସିଛି । କେନ୍ଦ୍ର ଓ 'ପରିଧି' ମଧ୍ୟରେ ଦ୍ୱନ୍ଦ୍ୱ ଲାଗି ରହିଛି ।

ଆମର ଗଣତନ୍ତ୍ରରେ 'ଅର୍ଥ' ଅନେକ ବ୍ୟବସ୍ଥାକୁ ପ୍ରାୟ କିଣି ନେଇପାରୁଛି । କିନ୍ତୁ ନୀତିଗତ ଦୃଷ୍ଟିରୁ 'ଗଣତନ୍ତ୍ର'ରେ ଏପରି କେତେକ ବିଷୟ ରହିଛି ଯାହା 'କିଣିନେବା' ଉଚିତ୍ ନୁହେଁ । ସେହି ବ୍ୟବସ୍ଥାମାନଙ୍କ ମଧ୍ୟରେ 'ଅଧିକାର' ଏକ ମୁଖ୍ୟ ବିଷୟ । 'ସମତା' ଓ 'ଦକ୍ଷତା' ଭିତରେ ବ୍ୟବଧାନ ବଢ଼ି ବଢ଼ି ଚାଲିଛି । ପ୍ରାୟ ସମସ୍ତ 'ଅଧିକାର' ଉପରେ 'ବଜାର ଅର୍ଥନୀତି' ତା'ର କାୟା ବିସ୍ତାର କରି ଚାଲିଛି । ଅର୍ଥ ଆମର 'ନ୍ୟାୟ ବ୍ୟବସ୍ଥା'କୁ ମଧ୍ୟ ନିୟନ୍ତ୍ରିତ କରି ଚାଲିଛି । ତେଣୁ ଶିଶୁ, ନାରୀ, ମାନବିକ ଅଧିକାର ପାଇଁ ଯେଉଁ ଆଲୋଚନାଚକ୍ର ହେଉଛି ବା କଥା କହିବା ପାଇଁ ଯେଉଁ 'ସ୍ୱାଧିନତା', ତାହା ମଧ୍ୟ ଅର୍ଥଶକ୍ତି ଦ୍ୱାରା ନିୟନ୍ତ୍ରିତ ହେଉଛି । ଏଥିପାଇଁ ଜୀବନ ଓ ଜୀବିକାର ପରିଚାଳନା କ୍ଷେତ୍ରରେ ମଧ୍ୟ 'ଅର୍ଥ' ହିଁ ନିୟାମକ ଭୂମିକା ନେଉଛି । 'ଭୋଟ ଅଧିକାର' ମଧ୍ୟ ପ୍ରଭାବଶାଳୀ ଜନପ୍ରତିନିଧିଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଛି । ଶିଶୁ ମୃତ୍ୟୁହାର ବଢ଼ି ବଢ଼ି ଚାଲିଛି । କାରଣ ବିତ୍ତଶାଳୀ ଜନ ପ୍ରତିନିଧିମାନେ 'ଜୀବନ ଓ ମୃତ୍ୟୁ'ର ଅଧିକାରକୁ ବିଧାନ ପ୍ରଣୟନ ଜରିଆରେ ନିୟନ୍ତ୍ରିତ କରି ଚାଲିଛନ୍ତି । ମନେ ହେଉଛି 'ପୁଂଜିବାଦୀ' ଅର୍ଥନୀତି ଏବେ କାଠଗଡ଼ାରେ । ଅଭିବୃଦ୍ଧିର ହାର ବଢ଼ାଇବା ପାଇଁ ଯେଉଁ ଅଙ୍କକଷା ଚାଲିଛି, ସେଥିରେ ଅଧିକାରର ସ୍ୱର କ୍ରମଶଃ ଚାପି ହୋଇ ଚାଲିଛି ।

ଏପରିକି ଭୋଟ ଅଧିକାରକୁ ମଧ୍ୟ ଅନୈତିକ ରାଜନୈତିକ ଉପାୟରେ କ୍ରୟ କରାଯାଇ ପାରୁଛି ।

ତେବେ ଏ ସବୁର ନିରାକରଣ ପାଇଁ କ'ଣ କୌଣସି ଉପାୟ ନାହିଁ ? ମନେ ହେଉଛି ଯେଉଁ ସମ୍ବଳ (ଆର୍ଥିକ) ଧନୀ ଲୋକମାନଙ୍କୁ ମିଳି ପାରୁଛି, ସେ ଦିଗରେ ରାଜ୍ୟ ବା ରାଷ୍ଟ୍ର ତାହାକୁ ସଂଯତ ଓ ନିୟନ୍ତ୍ରିତ ଅବସ୍ଥାକୁ ଆଣି 'ଦରିଦ୍ର ଜନସାଧାରଣ'ଙ୍କ ପାଇଁ ଓ ସେମାନଙ୍କର ଜୀବନ ଓ ଜୀବିକା ପାଇଁ ଅଧିକ ଅର୍ଥ ବ୍ୟୟ ବରାଦ କରିବା ଆବଶ୍ୟକ ହୋଇପଡ଼ିଛି । ଏହି ଅର୍ଥ କିପରି ସେମାନଙ୍କ ନିକଟରେ ସହଜରେ ମିଳିପାରିବ, ସେଥିପାଇଁ ଦକ୍ଷତା ଜରିଆରେ ପ୍ରଶାସନିକ କଳକୁ ପରିଚାଳିତ କରିବା ହିଁ ପୁଂଜିବାଦୀ ଅର୍ଥନୀତିର ସଫଳତା ପାଇଁ ଆବଶ୍ୟକ ହୋଇପଡ଼ିଛି ।

ଆଇନ୍ ନିକଟରେ ସମସ୍ତେ ସମାନ । ଏହି ଉକ୍ତିରେ ସମତା ଉପରେ ଯେଉଁ ପ୍ରାଧାନ୍ୟ ରହିଛି, ତାହା କେବଳ ପ୍ରଭାବଶାଳୀ ଧନୀ ଲୋକଙ୍କୁ ମିଳିପାରୁଛି । ତେଣୁ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଦୃଢ଼ କରିବାକୁ ହେଲେ ଆମର ଅନେକ ରୁଗ୍‌ଣ ପ୍ରଶାସନିକ ବ୍ୟବସ୍ଥା ଓ ଅନୁଷ୍ଠାନକୁ ସଂପୂର୍ଣ୍ଣ ବାତିଲ କରି 'ପ୍ରତ୍ୟେକ ନାଗରିକ'ର ଅଧିକାର ପାଇଁ ଯେଉଁ ଆଦର୍ଶ ରହିଛି, ସେଥିପାଇଁ ଆଇନଗତ ଓ ଆନୁଷ୍ଠାନିକତାର ସୁଦୂରପ୍ରସାରୀ ପରିବର୍ତ୍ତନ ଆବଶ୍ୟକ ହୋଇ ପଡ଼ିଛି । ଏହା ଫଳରେ ହିଁ ଘରୋଇକରଣ ସୁଦୃଢ଼ ହୋଇପାରିବ । ତେଣୁ ଏ ଦିଗରେ ଶିକ୍ଷାପ୍ରାପ୍ତ ନାଗରିକମାନଙ୍କର ଦାୟିତ୍ୱ ଅଧିକ । ଓଡ଼ିଶାରେ ଗୋଟାଏ କଥା ଅଛି 'ଚେଇଁ ଶୋଇଥିବ ଯିଏ, ତାକୁ ଉଠାଇବ କିଏ ?' ବହୁବର୍ଷ ତଳେ ଗାନ୍ଧିଜୀ କହିଥିଲେ - "କେତେକ ଲୋକଙ୍କ ହାତରେ ଧନର କେନ୍ଦ୍ରୀକରଣ ହେବା ମୁଁ ଚାହେଁ ନାହିଁ । ସମସ୍ତଙ୍କ ହାତରେ ଏହା ରହିବା ମୋର ଇଚ୍ଛା ।" ଫଳରେ 'ଅର୍ଥଶକ୍ତି' ନିୟନ୍ତ୍ରିତ ହୋଇପାରିବ ଓ ପ୍ରତ୍ୟେକ 'ନାଗରିକ' ତା'ର ଅଧିକାର ସାବ୍ୟସ୍ତ କରିପାରିବ । ସମତା ଓ ଦକ୍ଷତା ମଧ୍ୟରେ ବ୍ୟବଧାନ ସଂକୁଚିତ ହୋଇପାରିବ ।



# ଆଧୁନିକତା : ସ୍ୱର ଓ ସ୍ୱରୂପ (Modernity)

ଆଧୁନିକତାର ଅର୍ଥ ଓ ଅର୍ଥାନ୍ତର ବୁଝି ବୁଝାଇ ପାରିବା ଭଳି ଶକ୍ତି ମୁଁ ହରାଇ ସାରିଛି । ଏ ବିଷୟରେ ଯେତିକୁ ଭାବୁଛି, ସେତିକି ଏହା ଜଟିଳତର ମନେ ହେଉଛି । ମନେ ହେଉଛି ଜୀବନ ଯେତିକି ଆଗଉଛି, ପଛରେ ଛାଡ଼ି ଆସିଥିବା ଜୀବନ ସଂପର୍କିତ ଧାରଣା ବା ବୁଝାମଣା ସେତିକି ଆକୃଷ୍ଟ କରୁଛି । ପୁଣି ମନେ ହେଉଛି 'ଗତ' ଅତୀତ ଓ ଅନାଗତ ଭବିଷ୍ୟତ ମଧ୍ୟସ୍ଥଳରେ ଭାସି ଚାଲିବା ହିଁ ଆଧୁନିକତା ଛଡ଼ା କ'ଣ ହୋଇପାରେ ?

ନିଶ୍ଚିତ ଭାବରେ ଏହା କୁହାଯାଇ ପାରେ ଯେ, ଏହା ଏକ ପାଶ୍ଚାତ୍ୟ ପ୍ରତ୍ୟୟ ବା ଅବଧାରଣା । ଫଳରେ ଆମେ ବର୍ତ୍ତମାନ କାଳରେ ବାସ କରୁକରୁ, ଜୀବନ ସହିତ ସଂପୃକ୍ତ ବହୁ ବିଷୟକୁ 'ଆଧୁନିକ' ବିଶେଷଣ ଦ୍ୱାରା ପ୍ରକାଶ କରିବାକୁ ଆଗ୍ରହୀ । କାରଣ ପାଶ୍ଚାତ୍ୟ ଜଗତର ସମୟକୁ ଏକ ସରଳରେଖା ଭାବରେ ଚିନ୍ତାକରି ତାହାର ବିଭାଜନ ଓ ବର୍ଗୀକରଣ ପ୍ରକ୍ରିୟାରୁ ପ୍ରାଚୀନ, ମଧ୍ୟଯୁଗୀୟ, ଅଭ୍ୟୁଦୟ, ସଂସ୍କାରଧର୍ମୀ, ଆଦିକୁ କେବଳ ଆମେ ନୋହୁଁ, ପୃଥିବୀର ପ୍ରାୟ ସମସ୍ତ ରାଷ୍ଟ୍ର ଓ ରାଜ୍ୟ ଗ୍ରହଣ କରି ନେଇଛନ୍ତି । ଅନ୍ୟ ଭାବରେ କହିଲେ ଏହା ଆମର 'ମାନସିକତା'କୁ ବଦଳାଇ ସାରିଛି । ସେହି ପ୍ରକ୍ରିୟାରେ ଆମେ ସମସ୍ତେ ନିଜକୁ 'ଆଧୁନିକ'କହିବାରେ ଗର୍ବ ଅନୁଭବ କରୁଛୁ - ଯେଉଁମାନେ ଆମ ସହିତ ଏକମତ ନୁହନ୍ତି, ସେମାନଙ୍କୁ ଉପରୋକ୍ତ ବର୍ଗୀକରଣରୁ ଜାତ ପ୍ରତ୍ୟୟ ଦ୍ୱାରା ଚିହ୍ନିତ କରିବାକୁ କୁଣ୍ଠା ପ୍ରକାଶ କରୁନାହୁଁ । ତେଣୁ ବ୍ୟକ୍ତିବିଶେଷ, ସମାଜ, ରାଷ୍ଟ୍ର ଓ ରାଜ୍ୟ ମଧ୍ୟରେ ତୁଳନାତ୍ମକ ଆଲୋଚନା କାଳରେ ଚର୍ଚ୍ଚା-ବିଶାରଦଙ୍କ ମଧ୍ୟରେ ଆଧୁନିକ, ଆଧୁନିକତାବାଦ, ଆଧୁନିକୀକରଣ ବ୍ୟବହାର ପ୍ରସାର ଲାଭ କରିଚାଲିଛି । ତେଣୁ ଏହି ବିଭାଜିତ ପୃଥିବୀରେ ଆମେ ନିଜକୁ ଆଧୁନିକ କରିବାରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇସାରିଛି । ଏହି ପ୍ରତିଦ୍ୱନ୍ଦ୍ୱିତା ଫଳରେ ଆମ ଭିତରେ କେହି କେହି ଏହାର ବିରୋଧ କରୁଛନ୍ତି ତ କେହି କେହି ଆଧୁନିକ ନ ହୋଇ ପାରିଥିବାରୁ ଦୁଃଖିତ ବି ହେଉଛନ୍ତି, ଭୟଭୀତ ବି ହେଉଛନ୍ତି । କେହି କେହି ମଧ୍ୟ ନ ହୋଇ ପାରିଥିବା ମାନସିକତାକୁ ଅତିକ୍ରମ କରିବାକୁ ବି ପ୍ରଚେଷ୍ଟା ଜାରୀ ରଖିଛନ୍ତି ।

ଏଥିରୁ ଆଧୁନିକ ଇତିହାସ, ଆଧୁନିକ ଗଳ୍ପ, ଆଧୁନିକ କବିତା, ଆଧୁନିକ ମନୋବିଜ୍ଞାନ, ଆଦି ଜୀବନକୁ ଓ ସୃଷ୍ଟି ପ୍ରକ୍ରିୟାକୁ ବୁଝିବାକୁ ଜୀବନର ସକଳ କ୍ଷେତ୍ରରେ (ଆଧୁନିକ ଅର୍ଥନୀତି, ଆଧୁନିକ ଯୌନ ଚେତନା, ଆଧୁନିକ ନାରୀ ଆଦି) ଏହି 'ସାର୍ବଜନୀନ' ବିଶେଷଣର ପ୍ରୟୋଗ ବଢ଼ି ବଢ଼ି ଚାଲିଛି । ତେଣୁ ଆମ ସମୟର ପଞ୍ଜିକାରମାନେ ଏହି 'ବିଶେଷଣ' ଦ୍ୱାରା ଆମ ଭିତରେ ଥିବା 'ବିକାଶର ଧାରା'କୁ ଚିହ୍ନିତ କରିବାରେ ସମୟ ଅତିବାହିତ କରୁଛନ୍ତି ।

ଏବେ ଏହା ଏକ ପାଶ୍ଚାତ୍ୟ 'ଶବ୍ଦ' ବା 'ଧାରଣା' ହେଲେ ମଧ୍ୟ ଏହାର ମୂଳରୂପ ଷଷ୍ଠଦଶ ଶତାବ୍ଦୀରେ 'ଲାଟିନ୍' ଶବ୍ଦରୁ ଗୃହୀତ । ଏହାର ମୂଳ ଅର୍ଥ ଥିଲା ବର୍ତ୍ତମାନର ସ୍ଥିତି । କାଳକ୍ରମେ ଏହା ବିଶ୍ୱର ସମସ୍ତ ରାଷ୍ଟ୍ରର ଏକ ସଂପତ୍ତି ହୋଇପଡ଼ିଛି । ଏହାର ଆବାହନ ପ୍ରତ୍ୟାଖ୍ୟାନ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାରେ ଏବେ ବି ଚର୍ଚ୍ଚାରେ, ଯୋଜନାରେ ଏହାର ସ୍ୱର ଓ ସ୍ୱରୂପ ବଦଳାଇ ବଦଳାଇ ଚାଲିଛି । ଏହି ବ୍ୟାପକ ପ୍ରସାର ଫଳରେ ସାହିତ୍ୟରେ, ସଂସ୍କୃତିର କଳନାରେ ପାରଦର୍ଶିତା ବା ଅସଫଳତା ନେଇ ତର୍କର ଅବସାନ ଘଟିନାହିଁ ।

ଏଇଥିରୁ ମନେ ହେଉଛି ଯେ, ଏହା ଏକ 'ପ୍ରବାହ' ଓ ଘଟଣାର କାଳକ୍ରମିକ ଧ୍ୱନିର ବାର୍ତ୍ତାବହ ହୋଇସାରିଛି ଓ ପାରପାର୍ଶ୍ୱିକ ଜୀବନଶୈଳୀର ସ୍ଥିତି ଓ ଆତ୍ମନିର୍ଭରଶୀଳତା, ଭଗବଦ୍ ବିଶ୍ୱାସରେ ଅତୁଟ ଲକ୍ଷ୍ୟ, କ୍ରମଶଃ ଘୋରତର ପ୍ରତିଦ୍ୱନ୍ଦ୍ୱିତାକୁ ଆଦରି ନେଇଛି । ଫଳରେ ଏବର ମଣିଷମାନଙ୍କୁ ସର୍ବଦା ପରିବର୍ତ୍ତନଶୀଳ କରିବାକୁ ଶିକ୍ଷା ଦେଇ ଚାଲିଛି । ତେଣୁ ସଦାସର୍ବଦା ଆଧୁନିକୀକରଣ ଚାଲିଛି ଓ ଏହାର କୌଣସି ଅନ୍ତ ନାହିଁ । ଏହି 'ଆଧୁନିକୀକରଣ' ଧାରଣା ୱେବର, ମାର୍କ୍ସ, ଡରକ୍‌ହାଇମ୍ ଏପରି କି ଆଡ଼ାମସ୍ମିଥ୍‌ଙ୍କୁ ସେମାନଙ୍କ ସମୟରେ ବିହ୍ୱଳିତ କରିଥିଲା । ସେହିମାନଙ୍କ ପ୍ରଭାବ ସମାଜ ବିଜ୍ଞାନର ସମସ୍ତ ବିଭାଗକୁ କେବଳ ସ୍ପର୍ଶ କରିନାହିଁ - ବରଂ ସଂପୂର୍ଣ୍ଣ ଭାବରେ କରାଗତ କରି ସାରିଛି । ବିଜ୍ଞାନ ଓ ଶିଳ୍ପ ବିପ୍ଳବରୁ ଜାତ ପୁଂଜିବାଦର ପ୍ରସାର ଫଳରେ ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ର ମଧ୍ୟ ଏହାଦ୍ୱାରା ଆବିଷ୍ଟ ହୋଇଛି । ଅନ୍ୟ ଦେଶର ଧନସମ୍ପଦ ଓ ଜନଶକ୍ତିକୁ ଚଳଚଞ୍ଚଳ କରି ସେମାନଙ୍କୁ କ୍ରମଶଃ ନିଜର

ଚିନ୍ତାଧାରାରେ ଦୀକ୍ଷିତ କରି ସାରିଛି । ତେଣୁ ସମଗ୍ର ବିଶ୍ୱରେ ସବୁ ସମୟରେ ଅହରହ ପରିବର୍ତ୍ତନ ଚାଲିଛି । ଏହାର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳ ନାହିଁ, କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ - ଏହାର ଅନୁଗାମୀ ରାଷ୍ଟ୍ରମାନେ ମଧ୍ୟ ଏହାର ଭବିଷ୍ୟତ କ'ଣ ସେ ବିଷୟରେ ମଧ୍ୟ ଚିନ୍ତା କରୁ ନାହାନ୍ତି । କିନ୍ତୁ ଆଧୁନିକୀକରଣ ହିଁ ଲକ୍ଷ୍ୟ ଓ ଏହାର ବିଭବରେ ମଧ୍ୟ କୌଣସି ସଂଜ୍ଞା ବା ରୂପରେଖ ନାହିଁ । ଏ ସଂପର୍କରେ କେହି ଚିନ୍ତାଶୀଳ ବ୍ୟକ୍ତି ଏଯାବତ୍ ଉଭା ହୋଇନାହାନ୍ତି । ଆଧୁନିକୀକରଣ ସଦାସର୍ବଦା ଚଳଚଞ୍ଚଳ - ଏହାର ଏକମାତ୍ର ଲକ୍ଷ୍ୟ ବୋଧହୁଏ - 'ପୁଂଜି ସଂଗ୍ରହ' ଓ ଯେଉଁଠାରେ 'ପୁଂଜିର ସୂଚନା ଅଛି ସେଠାରୁ ତାହା ଉତ୍ତୋଳନ କରି ଆଧୁନିକ ହେବାର ମନୋବୃତ୍ତି ସୃଷ୍ଟି କରି ଚାଲିବା । ତେଣୁ ଆଧୁନିକତା ଓ ପାରଂପରିକତା ମଧ୍ୟରେ ସଂଘର୍ଷ ସଦା ସର୍ବଦା ଲାଗି ରହିଛି ଓ କେତେକାଳ ଚାଲୁ ରହିବ ତାହାର କୌଣସି ସମୟସୀମା ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ । ଏହି 'ସଂପତ୍ତି ଥିବାଦେଶ' ଓ 'ସଂପତ୍ତି କମ୍ ଥିବା ଦେଶ', ପୁଣି କୌଣସି ଏକ ରାଷ୍ଟ୍ର ମଧ୍ୟରେ ଥିବା ଏହି 'ସଂପତ୍ତି'ର ବ୍ୟବଧାନକୁ ହ୍ରାସ କରି ଏକ ନୂତନ ବିଶ୍ୱର ସୃଷ୍ଟି ଦିଗରେ ଆଶାୟୀ ବ୍ୟକ୍ତିମାନେ ତେଣୁ ଧରି ନେଇଛନ୍ତି ଯେ ଆଧୁନିକତାର ବେଗ ଯେତେ ଅଧିକ ହେବ, ତାହା ହିଁ ବିଭାଜିତ ପୃଥିବୀକୁ ଏକ ମାନକ ଅବସ୍ଥାକୁ ନେଇପାରିବ ।

ତେଣୁ ସାହିତ୍ୟ, ସଂସ୍କୃତି, କଳା/ବିଜ୍ଞାନ ସବୁ କ୍ଷେତ୍ରରେ ଏବେ ଆଧୁନିକତା ଧ୍ୟେୟ ହୋଇପଡ଼ିଛି । ଯଦିଓ ଏହାର 'ସ୍ୱର ଓ ସ୍ୱରୂପ' ଏବେ ବି ଅସ୍ପଷ୍ଟ । ଭୁଲିଗଲେ ଚଳିବ ନାହିଁ ଯେ, ଗାନ୍ଧିଜୀ ମଧ୍ୟ ଏ ଦିଗରେ 'ସଚେତନତା' ସୃଷ୍ଟି କରିଥିଲେ । ଆମ ତାଙ୍କୁ ଭୁଲିଯାଇ ନାହୁଁ କି ?



# ଆତ୍ମଜୀବନୀ (Autobiography)

ମୋ ଜୀବନ କଥା ପୁଣି ମୁଁ କହିବି —ଏଇଆକୁ ସାହିତ୍ୟ ସମାଲୋଚକ କହନ୍ତି : ଆତ୍ମଜୀବନୀ । ଏ ଇତିହାସ ଆତ୍ମାର ନା ଜୀବନର—ଏତିକି ତ ଏ ପରିଣତ ବୟସରେ ବୁଝିପାରିଲି ନାହିଁ — ପୁଣି କଣ ଲେଖିବି, ଜୀବନର ଚରିତ ନାଁ ଚରିତର ଉପକଥା ବା ଜୀବନର ଭଗ୍ନାଂଶ । ଏସବୁ ସେଇ ଇତିହାସର, କ୍ରମ ଅନୁସରଣକାରୀ ପଂଜିକାରର ଏକ ତାଲିକା । ଏ ତାଲିକାରେ ଆତ୍ମା ମିଳୁଛି ନା ଜୀବନ —ଏ ତାଲିକା ଯେତେ ବଡ଼ ହେବ, ସେ ସେତେବଡ଼ ମଣିଷ - ଆଉ ତାଲିକାର ଦିନ ତାରିଖ ବାର ବି ଯଦି ଭୁଲ୍ ହୋଇଗଲା - ସେ ବି ସେହି ଇତିହାସ - ଏ ପୁଣି ଲିପି ନିର୍ଭର ଇତିହାସ ନା ମୁଖ ନିସୃତ ବାଣୀର ସଂକଳନ-ପୁରାତନ ଇତିବୃତ୍ତିର ନା ଆଧୁନିକ ଭାବମୂର୍ତ୍ତିର ! ଏ ଇତିହାସ କେବଳ ବଡ଼ ମଣିଷଙ୍କର - ଆଉ ଛୋଟିଆ ମଣିଷଟିର, ଜୀବନ କିଏ ପଢୁଛି ନା କିଏ ଲେଖୁଛି - ସେଥିରୁ କଣ କିଛି ଶିଖିବାର ନାହିଁ !

ବହିପତ୍ର, ଶିଳାଲିପି, ତମ୍ବାପଟା ତାଳପତ୍ର ପୋଥି ଘାଣ୍ଟି ଘାଣ୍ଟି, ଜୀବନଟା କଟି ଯାଇପାରେ ଅନୁ-ଏଷଣାରେ । କିନ୍ତୁ ତଥାପି ରହିଯାଏ ଅନେକ ଅମୀମାଂସିତ ପ୍ରଶ୍ନ-ଶାସ୍ତ୍ରଗୁଡ଼ିକୁ ସବୁ ସାକାର ଭଗବାନ ଡ଼ାକି ଦେଇଥିଲେ ନା ନିରାକାର ଈଶ୍ୱର ଶେଷକରି ଦେଇଗଲେ -ପ୍ରଳୟ ପୟୋଧି ଜଳରାଶିରେ । ତେବେ ମୁଁ ପୁଣି କାହିଁକି ଲେଖିବି ସେଇ ଶରୀରର ଇତିହାସ, ପିଲାଠାରୁ ବୁଢ଼ା ହେଲାଯାଏ, ଶରୀରରେ ବିଭିନ୍ନତାର, ମନର ରୂପ ପରିବର୍ତ୍ତନର ଇତିହାସ । ସ୍ମୃତିର ରୋମନ୍ଥନ ଅଧାସତ, ପୁଣି କେବେ କେମିତି ମନଗଢ଼ା ମିଛର ସତ୍ୟତା କିମ୍ବା ପୁରାମିଛ ବା ଅସତ୍ୟର ଉପକଥା । ସେଇ କଥନିକାର, କାହାଣୀର, ବିଶ୍ୱସନୀୟତା ସୃଷ୍ଟି ପାଇଁ ଖଣ୍ଡିତ, ଅଖଣ୍ଡିତ ପ୍ରମାଣର, ଅନୁମାନର, ବାସ୍ତବତାର, କଳ୍ପନାର ମିଶ୍ରିତ ଏ ଇତିହାସ—ନିରବ ମୁହୂର୍ତ୍ତର ପୁଣି ସରବ କୋଳାହଳର ପ୍ରତିଲିପି, ଶବ୍ଦର ଗୁମ୍ଫନ—ସତେ କଣ ଏ ଶବ୍ଦଗୁଡ଼ିକ ଶବ୍ଦବ୍ରହ୍ମର ସ୍ପନ୍ଦନ ? ମୋ ଜୀବନ ତେଣୁ ସେମିତି ମିଛ - ଏ ମିଛ ମାୟାର ସଂସାରରେ ଗୁଡ଼ିଏ ଶବ୍ଦର କୋଳାହଳ —ଜୀବନକୁ ବୁଝିବାକୁ, ଜାଣିବାକୁ, ଜାଣି ଅଜଣା ରହିବାକୁ, ପୁଣି ଅଜଣା

ଜୀବନର ରୋମାଞ୍ଚକର କାହାଣୀର ବ୍ୟବଚ୍ଛେଦ କରିବା ପାଇଁ — ତେବେ ଇତିହାସ କଣ ସବୁ ସତରେ ସତ, ନା ଅର୍ଦ୍ଧେକ କଳ୍ପନା ପୁଣି ଅର୍ଦ୍ଧେକ ବାସ୍ତବ, ସତେ ଅବା ଅର୍ଦ୍ଧନାରୀଶ୍ୱର !

ତାହା ହିଁ ସଚରାଚର ଇତିହାସର ଭୂମି —ସେ ଭୂମି କର୍ଷଣରେ ଯେଉଁ ଫଳଶ୍ରୁତି, ତା ସତରେ ଆଦର୍ଶ ନା, ଆଦର୍ଶର ପ୍ରଚାର—-ଅହମିକାର କାୟା ବିସ୍ତାର—ଶବ୍ଦର ଅନୁରଣନରେ, ବ୍ୟଞ୍ଜନାରେ, ଭାବର ଆନନ୍ଦରେ । ୟେ ସବୁ ଯଦି ସତ ତାହା ହିଁ କଣ ମୋର ଜୀବନ ଚରିତ । ସେ ଚରିତ, ଆଉ ମୋର ଚରିତ୍ର କଣ ସତରେ ଏକାତ୍ମ— ବୋଧହୁଏ ସବୁ ମିଛକୁ, ସତର ପୁଟ ବଢ଼ାଇ ଆଣ ଆମକୁ ଚଳେଇ ନେବାକୁ ଚାହିଁଛୁ- —ସାହିତ୍ୟରେ, ଭାଷାରେ, କଳାରେ, ସଂଗୀତରେ—ପୁଣି ନିରବ ଭାଷାରେ, ଇଂଗିତରେ—ଶରୀରର ଭାଷାରେ । ତାହା ହିଁ ତ ମୋର ଜୀବନ ଚରିତ—ବା ଆତ୍ମଜୀବନୀ—ଏହା ଆତ୍ମାର ନୁହେଁ କି ଜୀବନର ନୁହେଁ-କେବଳ ଅହମିକାର ପ୍ରଳାପ, ଭାବମୂର୍ତ୍ତି ବିସ୍ତାରରେ ସଂଳାପ ।



# ଗୋଷ୍ଠୀବର୍ଣ୍ଣନ (Ethnography)

ସଂସ୍କୃତିର କ୍ଷେତ୍ରଜ ଅଧ୍ୟୟନ ପରିପ୍ରେକ୍ଷୀରେ ସାଂସ୍କୃତିକ ମାନବ ବିଜ୍ଞାନୀ (Cultural Anthropologist) ଏହି 'ପ୍ରତ୍ୟୟ'କୁ ଅଧିକ ବ୍ୟବହାର କରିବା ଆରମ୍ଭ କରିଥିଲେ । ଏହାର ଉଦ୍ଦେଶ୍ୟ ଥିଲା ଯେ ଗବେଷକ/ଗବେଷିକା କୌଣସି ଏକ ''ନିର୍ଦ୍ଦିଷ୍ଟ ଗୋଷ୍ଠୀ''ର କାର୍ଯ୍ୟକଳାପ, ଆଳାପ ଆଲୋଚନା, ଲିଖିତ/ଅଲିଖିତ ଅଭିବ୍ୟକ୍ତିକୁ ବୁଝିବା ପାଇଁ ସେହି ''ଗୋଷ୍ଠୀ'' ସହିତ ସମୟ କଟାଇ ''ସହଭାଗୀ'' (Participate) ଭାବରେ ଯାହା ''ଦେଖିଲେ'' (observe) ତା'ରି ଜରିଆରେ 'ସଂସ୍କୃତି'ର କଳନା କରିବାକୁ ଚେଷ୍ଟା କରିବେ । ସେଥିପାଇଁ ଏହି ଗବେଷଣା ମାର୍ଗକୁ ''ଭିତରୁ ଦେଖିବା'' (Insider's view) ଭାବରେ ଉପସ୍ଥାପିତ କରାଗଲା । ଏଥିପାଇଁ ଯେଉଁ ମାର୍ଗର ସୃଷ୍ଟି ହେଲା ତାହା, ସାକ୍ଷାତକାର, ବାର୍ତ୍ତାଳାପ, ଆଲୋଚନା, ସଂସ୍କୃତି ସୂଚକ ଅଭିବ୍ୟକ୍ତି ସହିତ ''ଡ଼ାଏରୀ'' ଲିଖନ, ବିଭିନ୍ନ ବୟସର ଓ ଲିଙ୍ଗଭେଦ ଜନିତ ବ୍ୟାଖ୍ୟା ମଧ୍ୟ ସଂଗୃହୀତ ହେଲା । ଫଳରେ ''ସଂସ୍କୃତି''ର ଅଧ୍ୟୟନ ପାଇଁ ଯେଉଁ ନୂତନ ଆଭିମୁଖ୍ୟ ସୃଷ୍ଟି ହେଲା, ସେହି ମାର୍ଗକୁ ଅଧିକ ତତ୍ତ୍ୱଧର୍ମୀ କରିବାକୁ କ୍ରମଶଃ ମାନବ ବିଜ୍ଞାନୀ ଓ ସମାଜ ବିଜ୍ଞାନୀମାନଙ୍କର ଚର୍ଚ୍ଚା ଫଳରେ 'ସଂସ୍କୃତି'ର ଏକ ତାତ୍ତ୍ୱିକତା ସୃଷ୍ଟି ହେଲା । ଏହି ମାର୍ଗକୁ ଭିତ୍ତିକରି ''ଯୁବ-ସଂସ୍କୃତି', 'ନାରୀ-ସଂସ୍କୃତି', ଅମଲାତାନ୍ତ୍ରିକ ସଂସ୍କୃତି ଆଦି ସଂସ୍କୃତିର ବିଭିନ୍ନ ଦିଗ ସଂପର୍କରେ କ୍ରମଶଃ କ୍ଷେତ୍ରଜ ଅଧ୍ୟୟନ ଜନିତ ଗ୍ରନ୍ଥମାନ ପ୍ରକାଶ ପାଇଲା । ଏହି ଧାରା ବିଂଶ ଶତାବ୍ଦୀରେ ବିଶେଷ ଭାବରେ ପ୍ରସାର ଲଭିଲା । ଦୃଷ୍ଟାନ୍ତ ସ୍ୱରୂପ ସେକ୍ସପିୟରଙ୍କ ନାଟକ ''ଭାରତରେ'', ଯେ କୌଣସି ଭାଷାରେ ଉପସ୍ଥାପନ କଲାବେଳେ, ସଂସ୍କୃତିର ତା ଉପରେ କିପରି ପ୍ରଭାବ ପଡୁଛି ବା ସଂସ୍କୃତି କିପରି ପ୍ରଭାବିତ ହେଉଛି, ତା'ର କଳନା ଆରମ୍ଭ ହେଲା । ଏହା ଫଳରେ ''ଅଭିଚର୍ଚ୍ଚା ବିଶାରଦ''ମାନେ ଏ ସଂପର୍କରେ ତାତ୍ତ୍ୱିକ ବିଭିନ୍ନତା ପ୍ରକାଶ କଲେ । ପ୍ରଶ୍ନ ହେଲା ଜଣେ ଗବେଷକ ପକ୍ଷରେ ''ନିର୍ଦ୍ଦିଷ୍ଟ ସଂସ୍କୃତି'ର ଅଂଶୀଦାର ହେବା ପୁଣି ତା'ଠାରୁ ଦୂରରେ ରହି ବ୍ୟକ୍ତି ସ୍ୱାତନ୍ତ୍ର ରକ୍ଷା କରିବା ସମ୍ଭବ କି ? ଏହା ଫଳରେ ''ସାଂସ୍କୃତିକ ଅଧ୍ୟୟନ'' ବିଜ୍ଞାନ-ସମ୍ମତ, ନା ''ବ୍ୟାଖ୍ୟାକାର'ଙ୍କ ଦୃଷ୍ଟିଭଙ୍ଗୀ, ନା ଏହା ''ସଂସ୍କୃତିର'' ଗୁଣାତ୍ମକ ଅଭିବ୍ୟକ୍ତି —ଆଦି ପ୍ରଶ୍ନମାନ ଉତ୍ଥାପିତ ହେଲା । ଫଳରେ ପରିସଂଖ୍ୟାନ ଜନିତ ବା ପରିମାଣାତ୍ମକ (empirical)ର ପରିଭାଷା ସୃଷ୍ଟି

ହେଲା । ବ୍ୟୁତ୍ପତ୍ତି, 'ପାଠ' (Textual)ର ବ୍ୟାଖ୍ୟା ଓ ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ବଳୟ (Paradigm) ବିଷୟରେ ବିଚାର ବିମର୍ଶ, ସାଂସ୍କୃତିକ ଅଧ୍ୟୟନକୁ ଅଧିକ ତତ୍ତ୍ୱଦର୍ଶୀ କରିବାକୁ ପ୍ରୟାସ କଲା । ଏହି ପ୍ରୟାସରୁ ସାଂସ୍କୃତିକବାଦ(Culturalism) ଓ 'ସଂରଚନାତ୍ମକବାଦ'ର (Structuralism) ଦୁଇଟି ସମାନ୍ତରାଳ ଆଭିମୁଖ୍ୟ ଦେଖାଦେଲା । 'ସଂରଚନାତ୍ମକ' ଆଲୋଚନା ବିଶେଷ ଭାବରେ ''ସଂସ୍କୃତିର ବ୍ୟାକରଣ'' ଭାବରେ ଗୃହୀତ ହେଲାବେଳେ ସାଂସ୍କୃତିକବାଦକୁ ସଂପୂର୍ଣ୍ଣ ଦୃଷ୍ଟିଭଙ୍ଗୀ (Holistic) ବୋଲି ବିଚାର କରାଗଲା । ଏଇଥିରୁ ମନେହେଲା ଯେ, 'ପାଠ୍ୟ' ଅଧ୍ୟୟନ (Textual) କ୍ଷେତ୍ରରେ ଉଭୟ ''ମନ୍ମୟତା'' (Subjective) ଓ ''ସାମାଜିକ ଅର୍ଥ ସମୂହ''କୁ ଆବିଷ୍କାର କରିବା ସମ୍ଭବ ବୋଲି ଗିର୍ଜ (Clifford Geertz) ମତପ୍ରକାଶ କଲେ । ଫଳରେ ଯେ କୌଣସି ''ସଂସ୍କୃତି''ର ଅଧ୍ୟୟନ କ୍ଷେତ୍ରରେ ଏହି ''ସହଭାଗୀ ଦୃଷ୍ଟିଭଙ୍ଗୀ'' (Participant Observation)ର ଆବଶ୍ୟକତା ରହିଛି । ଏପରି କି ''ସାହିତ୍ୟ'' କ୍ଷେତ୍ରରେ ମଧ୍ୟ ଏହି ''ସହଭାଗୀ ଦୃଷ୍ଟିଭଙ୍ଗୀ'' ଗଳ୍ପ, ଉପନ୍ୟାସ, ବା ଅନ୍ୟାନ୍ୟ ସର୍ଜନାତ୍ମକ କଳା ମଧ୍ୟରେ ଆଲୋଚନାର ପରିସର ଭିତରକୁ ଆସିଲା । ଭିନ୍ନ ଭାଷାରେ କହିଲେ ଗାଳ୍ପିକ ବା ଔପନ୍ୟାସିକ କୌଣସି ''ସାଂସ୍କୃତିକ ବର୍ଣ୍ଣନା'' କଲାବେଳେ ''ଗୋଷ୍ଠୀବର୍ଣ୍ଣନ'' କରିଥାଏ । କାରଣ ଲେଖକ/ ଲେଖିକା, ସେହି ''ସଂସ୍କୃତି''ସହିତ 'ଏକାତ୍ମ' ନହୋଇ ପାରିଲେ ତାହା ''ଆଦୃତ'' ହେବାର ସମ୍ଭାବନା କମ୍ ବୋଲି ଜଣାପଡ଼ିଲା । ତେଣୁ ଏହି ପରିପ୍ରେକ୍ଷୀରେ ଉପନ୍ୟାସ/ ନାଟକ/ଗଳ୍ପରେ ''ଲୋକ ଉପାଦାନ'' (folk element) କ୍ରମଶଃ ସର୍ଜନାତ୍ମକ ସାହିତ୍ୟରେ ଆଦୃତ ହେଲା । ଏ ଦିଗରେ ଫକୀରମୋହନଙ୍କ କୃତିକୁ ଉଦାହରଣ ଭାବରେ ନିଆଯାଇପାରେ । ''ଗୋଷ୍ଠୀବର୍ଣ୍ଣନ''ର ଏହି 'ତାତ୍ତ୍ୱିକତା' କ୍ରମଶଃ ବିସ୍ତାର ଲାଭ କରି ସଂସ୍କୃତିର ''ମୂଲ୍ୟବୋଧ'' (value) ସଂପର୍କୀୟ ଆଲୋଚନା ପାଇଁ ମାର୍ଗ ସୃଷ୍ଟି କଲା ।

ଏହି ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ପରିଭାଷାଗତ ତାତ୍ତ୍ୱିକତାକୁ ନେଇ ''ମାର୍ଗଦର୍ଶୀ'' ଗ୍ରନ୍ଥ ବା ଲେଖା ଆବିଷ୍କାର କଲେ ହିଁ ''ଅଭିଚର୍ଚ୍ଚା''ର ଗଭୀରତା ପ୍ରତିପାଦନ କରିହେବ ।



# ଗୋଷ୍ଠୀକୈନ୍ଦ୍ରିକ (Ethnocentric)

ରାଷ୍ଟ୍ରୀୟତାବାଦର ସୃଷ୍ଟି ପ୍ରଚଳନ ଓ ପ୍ରସାର ଫଳରେ ଏକ ନିର୍ଦ୍ଦିଷ୍ଟ ରାଷ୍ଟ୍ରୀୟ ସୀମା ମଧ୍ୟରେ ଅନେକ ପାରଂପରିକ ଗୋଷ୍ଠୀ ମଧ୍ୟରେ ଗୋଷ୍ଠୀ ଚେତନାର ପ୍ରସାର ଘଟିଲା । ଭାରତରେ ଏହାର ବିଭିନ୍ନ ରୂପ ଦେଖିବାକୁ ମିଳିଲା । ପାରଂପରିକ ସମାଜରେ ଏହା ''ଜାତିଭିତ୍ତିକ'' ଥିଲା । କିଂତୁ ରାଷ୍ଟ୍ରୀୟତାର ପ୍ରସାର ଘଟିବା ଫଳରେ ଏହା ଜାତି, ଶ୍ରେଣୀ, ବ୍ୟବସାୟ ଓ ବିଭିନ୍ନ ବୃତ୍ତିଗତ କ୍ଷେତ୍ରରେ ନୂତନ ''ଗୋଷ୍ଠୀ''କୁ ଜନ୍ମ ଦେଲା-– ଯେପରି ଅମଲା ଗୋଷ୍ଠୀ, ବ୍ୟବସାୟୀ ଗୋଷ୍ଠୀ, ଶିକ୍ଷକଗୋଷ୍ଠୀ । ''ଗୋଷ୍ଠୀ ଚେତନା''ର କ୍ରମଶଃ ପ୍ରସାର ଫଳରେ ଏହା ତାତ୍ତ୍ୱିକତା ଦୃଷ୍ଟିରୁ ଏକ ଜଟିଳ ବ୍ୟାଖ୍ୟାର ସମ୍ମୁଖୀନ ହୋଇସାରିଛି - ଏପରିକି ଏହି 'ଚେତନା' ''ଭାଷାଗୋଷ୍ଠୀ'' ''ଧର୍ମ'' ପରଂପରାର ବିଭିନ୍ନ ପର୍ଯ୍ୟାୟରେ ନୂତନ ଗୋଷ୍ଠୀ (ଏବେ ଯେପରି ''ବମ୍ ବମ୍ ଗୋଷ୍ଠୀ'' ବା ଟି.ଭି.ର ଦର୍ଶକ ଗୋଷ୍ଠୀ, ନୃତ୍ୟ ସଂଗୀତରେ ମଧ୍ୟ ଗୋଷ୍ଠୀ) ଚେତନାର ପ୍ରସାର ଘଟାଇ ଚାଲିଛି ।

ପ୍ରଶାସନିକ କ୍ଷେତ୍ରରେ ମଧ୍ୟ ପ୍ରଥମ ଦଶକରେ ଭାରତରେ ''ଗୋଷ୍ଠୀ ଉନ୍ନୟନ'' (Community Development) ପ୍ରତ୍ୟୟର ବ୍ୟବହାର ଦେଖାଦେଲା । ସେହିପରି ସାହିତ୍ୟ/ସଂସ୍କୃତି କ୍ଷେତ୍ରରେ ମଧ୍ୟ ବିଭିନ୍ନ ବ୍ୟକ୍ତି ବିଶେଷ ବା ଚିନ୍ତନକୁ, ଶୈଳୀକୁ, ପ୍ରକାଶଭଙ୍ଗୀକୁ ନେଇ ନୂତନ ଗୋଷ୍ଠୀର ଉନ୍ମେଷ ଘଟିଲା ଓ ଏବେ ବି ଘଟି ଚାଲିଛି । ସ୍ୱାଧୀନତା ସଂଗ୍ରାମ କାଳରେ ଗାନ୍ଧିଜୀ ଏହାକୁ ଲକ୍ଷ୍ୟ କରି ''ଗ୍ରାମ''କୁ ଏକ 'ଏକକ' (Unit) ଗୋଷ୍ଠୀ ଭାବରେ ଗ୍ରହଣ କରି ''ଗ୍ରାମ ସ୍ୱରାଜ''ର ପରିକଳ୍ପନା କରିଥିଲେ ।

ଏହି ବିକାଶଧାରାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏହା ନିର୍ଦ୍ଦିଷ୍ଟ ଜନସମୂହର ଭାଷା, ବିଶ୍ୱାସ, ପ୍ରଥା, ପର୍ବପର୍ବାଣୀକୁ କେନ୍ଦ୍ର କରି ସେହି ନିର୍ଦ୍ଦିଷ୍ଟ ଗୋଷ୍ଠୀର ଉଦ୍ଧରଣ, ପ୍ରତିରକ୍ଷା ଓ ପ୍ରସାର କ୍ଷେତ୍ରରେ ଘଟି ଆସିଥିବା/ବା ଘଟୁଥିବା ପ୍ରବାହକୁ ''ଗୋଷ୍ଠୀକୈନ୍ଦ୍ରିକତା'' ଭାବରେ ସମୀକ୍ଷକ ବା ଚର୍ଚ୍ଚା-ବିଶାରଦମାନେ ନିରୂପିତ କଲେ । ଏହି ପ୍ରତ୍ୟୟ ବୌଦ୍ଧିକତା କ୍ଷେତ୍ରରେ ଏପରିକି ରାଜନୀତିରେ (ଲୋହିଆଗୋଷ୍ଠୀ, ନେହେରୁ ଗୋଷ୍ଠୀ, ନେତାଜୀ ଗୋଷ୍ଠୀର ରୂପ ମଧ୍ୟ ପରିଗ୍ରହ କଲା) ଓ ସଶସ୍ତ୍ରବାହିନୀ ବା ନକ୍ସଲ ଆନ୍ଦୋଳନରେ ବି ବିଭିନ୍ନ ଗୋଷ୍ଠୀର ସୂତ୍ରପାତ କଲା ।

ଏଣୁ ଏହି ''ଗୋଷ୍ଠୀକୈନ୍ଦ୍ରିକତା''ରୁ କାଳକ୍ରମେ ''ଗୋଷ୍ଠୀକୈନ୍ଦ୍ରିକତା''ବାଦ (Ethnocentrism) ସୃଷ୍ଟି ହେଲା । କିନ୍ତୁ ଏହା କଣ ? ଏ ସଂପର୍କରେ ଏକ ନିର୍ଦ୍ଦିଷ୍ଟ ''ସଂଜ୍ଞା'' ନିରୂପିତ ହୋଇ ପାରିଲା ନାହିଁ । ଭିନ୍ନ ଋଷିଙ୍କର ଭିନ୍ନ ମତ ନ୍ୟାୟରେ ଏହି ''ସଂଜ୍ଞା ସମୂହ'' ମଧ୍ୟରେ ଏକ ''ମାନକ'' ସୃଷ୍ଟି କରିବାକୁ 'ଚର୍ଚ୍ଚା ବିଶାରଦ'ମାନେ ପ୍ରୟାସ ଜାରି ରଖିଲେ । ମୋ ଅଧ୍ୟୟନର ପରିସର ମଧ୍ୟରେ ''ଓଡ଼ିଆ ସାହିତ୍ୟ/ ସଂସ୍କୃତି କ୍ଷେତ୍ରରେ'' ଏଭଳି ଏକ ''ପ୍ରତ୍ୟୟଗତ ମାନ୍ୟତା'' ସୃଷ୍ଟି ହୋଇପାରିନାହିଁ । ତେଣୁ ଆମର ''ସାହିତ୍ୟ ଓ ସଂସ୍କୃତି''ର ''ଚର୍ଚ୍ଚା ବିଶାରଦ''ମାନେ ଏବେ ବି ପଶ୍ଚିମଜଗତରେ ସୃଷ୍ଟି ହୋଇଥିବା 'ସଂଜ୍ଞା'ର ଅନୁକରଣ ବା ଅନୁବାଦ କରିବାର ମୋହରୁ ମୁକ୍ତ ହୋଇ ପାରିନାହାନ୍ତି । ଠିକ୍ ଅନୁରୂପ ଭାବରେ ପରଂପରାବାଦୀମାନେ ଓ ''ସଂସ୍କୃତି''ର ଭାଷା ପ୍ରବୀଣମାନେ ''ପ୍ରତ୍ୟୟଗତ'' ବ୍ୟୁତ୍ପତ୍ତି କ୍ଷେତ୍ରରେ କିପରି ''ପୁରାତନ'' ଶବ୍ଦର ଆଧୁନିକ 'ପ୍ରତ୍ୟୟଗତ' ବ୍ୟାଖ୍ୟା କରିବାକୁ ହେବ - ସେ ସମ୍ପର୍କରେ ଧ୍ୟାନ ଦେବା ଲକ୍ଷ୍ୟ କରାଯାଉନାହିଁ । ୧୯୬୫ରେ ରବର୍ଟ ବ୍ରାଉନ ''ଗୋଷ୍ଠୀକୈନ୍ଦ୍ରିକତାବାଦ''ର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଲେ ଯେ ''ଏହା ଗୋଟିଏ ଗୋଷ୍ଠୀର ସାଂସ୍କୃତିକ ମାନକକୁ ଅନ୍ୟଗୋଷ୍ଠୀ ଉପରେ ପ୍ରୟୋଗ କରିବାର ପ୍ରଚେଷ୍ଟା'' । ଗାଗନେସ୍ ହେଲର ୧୯୮୫ ମସିହାରେ କହିଲେ ଯେ ''ଏହା ପ୍ରତ୍ୟେକ ସାଂସ୍କୃତିକଗୋଷ୍ଠୀର ମନୋଭାବକୁ ଅନ୍ୟ ଏକ ସାଂସ୍କୃତିକ ଗୋଷ୍ଠୀ ଉପରେ ପ୍ରଭାବ ପକାଇବାର ପ୍ରଚେଷ୍ଟା । ''ଏଇଥିରୁ ''ଆମେ'' ଓ ଅନ୍ୟମାନେ (others) ଏହି ପ୍ରତ୍ୟୟମାନ ଅଧିକ ଦୃଢ଼ୀଭୂତ ହେଲା । ଏହା କ୍ରମଶଃ ''ଗୋଷ୍ଠୀ ବିବାଦର'' ରୂପ ପରିଗ୍ରହ କଲା ।

ନିକଟ ଅତୀତରେ ଏହା ଉତ୍ତର ଆୟର୍ଲାଣ୍ଡ, ମଧ୍ୟପ୍ରାଚ୍ୟ, ବସନିଆ, ରୁଆଣ୍ଡା ପ୍ରଭୃତିରେ ଦେଖା ଦେଇଛି । ଭାରତରେ ଏପରିକି ଓଡ଼ିଶାରେ ମଧ୍ୟ ଏହା ''ପାଣ'', ''କନ୍ଧ'', ଦଳିତ/ଜାତି ଆଦି କ୍ଷେତ୍ରରେ ସୃଷ୍ଟି ହୋଇଥିବାର ସୂଚନା ଉଭୟ ଲିଖିତ ଓ ଅଲିଖିତ ସାହିତ୍ୟର ପ୍ରବାହରେ ଉପଲବ୍ଧ ହେଉଛି ।

''ଶୈକ୍ଷିକ ଶୃଙ୍ଖଳା'' (Academic Discipline) କ୍ଷେତ୍ରରେ ଏହାର ବ୍ୟବହାର ବିଶେଷ ଭାବରେ ''ସାଂସ୍କୃତିକ ମାନବବିଜ୍ଞାନ'' (Cultural Anthropology) କ୍ଷେତ୍ରରେ ବଳବତ୍ତର ରହିଛି । ଏଇଥିରୁ ''ଗୋଷ୍ଠୀ ବିଜ୍ଞାନ'' (Ethnology), ''ଗୋଷ୍ଠୀବର୍ଣ୍ଣନ'' (Ethnography) ଆଦିର ଗବେଷଣା

ମାର୍ଗରେ ସ୍ୱାତନ୍ତ୍ର୍ୟ ମଧ୍ୟ ଲକ୍ଷ୍ୟ କରି ହେଉଛି । ''ଗୋଷ୍ଠୀବର୍ଣ୍ଣନ'' କ୍ଷେତ୍ରରେ ଏକ ''ସାଂସ୍କୃତିକ ଗୋଷ୍ଠୀ''ର ଗବେଷକ ଅଧ୍ୟୟନ, ଅନ୍ୱେଷଣ, ବର୍ଣ୍ଣନା କଲାବେଳେ,ଗବେଷକ ଆପଣା ସଂସ୍କୃତିର ପ୍ରତ୍ୟୟଗତ ''ଶବ୍ଦରାଜି'' ଜରିଆରେ ମୂଲ୍ୟାୟନ କରିବା ସମ୍ଭବ ନୁହେଁ । ଏହାକୁ କେହି କେହି ''ଉଚ୍ଚ''/କ୍ଷୁଦ୍ର (Great/ Little) କହି ପ୍ରତ୍ୟୟଗତ ସ୍ୱଚ୍ଛତା ଆଣିବାକୁ ଚେଷ୍ଟାକଲା ବେଳେ ଅନ୍ୟ କେହି ଏହାକୁ ''ଶାସ୍ତ୍ରୀୟ'' ବା ଅଲୌକିକ (Transcendental ଓ Pragmatic) ଅଧିବାସ୍ତବ ଭାବରେ ଭେଦରେ ବର୍ଣ୍ଣନା କରିବାକୁ ଚେଷ୍ଟା କରି ଚାଲିଛନ୍ତି ।

ଏଇଥିରୁ ମନେ ହେଉଛି ''ଗୋଷ୍ଠୀକୈନ୍ଦ୍ରିକତାବାଦ'' ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ପରିଚିତି ଦୃଢ଼ କରିବାକୁ ଚେଷ୍ଟା କରୁଛି । ନିକଟ ଅତୀତରେ ''ସାନ୍ତାଳୀ'' କ୍ଷେତ୍ରରେ ଯାହା ଘଟିଛି - ଓଲ୍‌ଚିକି ଲିପି ଓ ସାହିତ୍ୟର ସୃଷ୍ଟି ଫଳରେ । ଏବେ ''କୋଶଲୀ ବା ସମ୍ବଲପୁରୀ'' କ୍ଷେତ୍ରରେ ଏହାର ସୂଚନାସବୁ ଦେଖା ଦେଉଛି । କିନ୍ତୁ ଏହି ''ଗୋଷ୍ଠୀକୈନ୍ଦ୍ରିକତାବାଦ''କୁ ''ସାଂସ୍କୃତିକ ମାନବ ବିଜ୍ଞାନୀ'' ଯେପରି ବ୍ୟାଖ୍ୟା କରନ୍ତି, ସାଧାରଣ ପରିଦର୍ଶକ (Tourists),ସାମ୍ବାଦିକ (Journalists) ମାନେ ଯେପରି ବ୍ୟାଖ୍ୟା କରନ୍ତି, ଏହି ''ବ୍ୟାଖ୍ୟା'' ବା ''ବର୍ଣ୍ଣନରାଜି'' ମଧ୍ୟରେ ଏକ ''ମାନକ'' ସୃଷ୍ଟି ହୋଇପାରିନାହିଁ — ଯାହା ନିର୍ଦ୍ଦିଷ୍ଟ ''ଶୈକ୍ଷିକ ଶୃଙ୍ଖଳା''ର ପରିଧି ବାହାରେ ଏକ ''ସାଂସ୍କୃତିକ ତାତ୍ତ୍ୱିକତା'' ସୃଷ୍ଟି କରି ପାରିବ । ଏହା ଫଳରେ ପ୍ରଧାନଗୋଷ୍ଠୀ (Dominant) ଓ ସଂଖ୍ୟାନ୍ୟୂନ (minority) ଗୋଷ୍ଠୀ ମଧ୍ୟରେ ଭାରସାମ୍ୟ ରକ୍ଷା କରାଯାଇ ପାରୁନାହିଁ । ମନେ ହେଉଛି ଏହି ''ଗୋଷ୍ଠୀ କୈନ୍ଦ୍ରିକତା ବାଦ'' କ୍ରମଶଃ ''ରାଷ୍ଟ୍ରୀୟତାବାଦ''ର ପ୍ରତିପକ୍ଷ ଭାବରେ ଉଭା ହୋଇପାରେ ।

ଏହି ''ପ୍ରତ୍ୟୟ''କୁ ତେଣୁ 'ଅବହେଳା' ପ୍ରଦର୍ଶନ କରିବା ଆଉ ସମ୍ଭବ ନୁହେଁ -କାରଣ ଜଗତୀକରଣ ଜରିଆରେ, 'ରାଷ୍ଟ୍ର' ଏକ ଭୌଗୋଳିକ ସୀମା ମଧ୍ୟରେ ଆଉ ଆବଦ୍ଧ ନୁହେଁ ।

ତେଣୁ ''ପରିଭାଷାର ତାତ୍ତ୍ୱିକତା'' କ୍ଷେତ୍ରରେ ଓ ସାଂସ୍କୃତିକ ପରିବର୍ତ୍ତନ ପରିପ୍ରେକ୍ଷୀରେ ''ଅଭିଚର୍ଚ୍ଚା ବିଶାରଦ''ମାନେ ସାହିତ୍ୟ ଓ ସଂସ୍କୃତିର ଆଲୋଚନା କ୍ଷେତ୍ରରେ ଅଧିକ ଧ୍ୟାନ ଦେବାର ମୁହୂର୍ତ୍ତ ଉପସ୍ଥିତ ।



# ଜଗତୀକରଣ (Globalisation)

୧୯୮୦ ଦଶକରୁ ଏହି 'ପ୍ରତ୍ୟୟ'ଟିର ବ୍ୟବହାର ଆରମ୍ଭ ହେଲା । ଅର୍ଥନୈତିକ ବଜାର ସୃଷ୍ଟିର ପ୍ରସାରଣ ହିଁ ଏହାର ମୂଳ ଲକ୍ଷ୍ୟ । ପଶ୍ଚିମ ଭୂଖଣ୍ଡରେ 'ମୌଳିକ ପୁଞ୍ଜିବାଦ'ର ଦାୟାଦ ଭାବରେ ଏହାର ସୃଷ୍ଟି । ସୂଚନା ବିଜ୍ଞାନର ପ୍ରସାର ଫଳରେ 'ବହୁ ରାଷ୍ଟ୍ରୀୟ ନିଗମ' ମାନଙ୍କର ପ୍ରାଧାନ୍ୟ ହିଁ ଏହାର ବାର୍ତ୍ତମାନିକ ସ୍ଥିତି । ଏହି 'ପ୍ରତ୍ୟୟ'ଟିର ସୃଷ୍ଟି ଓ ପ୍ରସାରଣ ଫଳରେ ଏ ଦିଗରେ ସାଂସ୍କୃତିକ ଜଗତରେ ବିଭିନ୍ନ ମତବାଦ ସୃଷ୍ଟି ହୋଇଛି । ପଶ୍ଚିମ ଜଗତରେ 'ବଜାର ସୃଷ୍ଟି' ପାଇଁ ସ୍ଥାନାଭାବ ଓ ପୁଞ୍ଜିର ଅଭାବ ଦେଖାଦେବାରୁ ଓ ଉତ୍ପାଦନ ଖର୍ଚ୍ଚ ବହୁଳ ଭାବରେ ବୃଦ୍ଧି ପାଉଥିବାରୁ ଏମାନେ ସେମାନଙ୍କ ଉତ୍ପାଦନ କେନ୍ଦ୍ରକୁ ଦ୍ୱିତୀୟ ଓ ତୃତୀୟ ବିଶ୍ୱରେ ସ୍ଥାନିତ କରିବାକୁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଏହି 'ନୂତନ ବଜାର ସୃଷ୍ଟି' ପାଇଁ ଯେଉଁ 'ଶସ୍ତାଶ୍ରମ'ର ଆବଶ୍ୟକତା ରହିଛି, ତାହାରି ଅନୁସନ୍ଧାନର ବ୍ରତୀ ହୋଇ ସଂଗୀତ, ଚଳଚ୍ଚିତ୍ର, ଦୂରଦର୍ଶନ ଓ ଗଣଯୋଗାଯୋଗର ଅନ୍ୟାନ୍ୟ ମାଧ୍ୟମ ଜରିଆରେ ଏହି ଲକ୍ଷ୍ୟ ହାସଲ କରିବାରେ ଏହା ବ୍ରତୀ । ଏହା 'ବଜାର ସୃଷ୍ଟି' ବ୍ୟତୀତ ଗ୍ରାହକ/ଉପଭୋକ୍ତା ବୃଦ୍ଧି ପାଇଁ ମଧ୍ୟ ଚେଷ୍ଟା କରି ଆସିଛନ୍ତି । ତେଣୁ ଅର୍ଥନୀତି ଦୃଷ୍ଟିରୁ ଦରିଦ୍ର ଦେଶମାନେ ଉତ୍ପାଦନ କେନ୍ଦ୍ର ସୃଷ୍ଟି କରିବା କ୍ଷେତ୍ରରେ ସ୍ୱାଭାବିକ ଭାବରେ ସହଯୋଗ ଯୋଗାଇ ଆସିଛନ୍ତି । ପୁଣି 'ଉତ୍ପାଦିତ ବସ୍ତୁ' ଗୁଡ଼ିକ ଅପେକ୍ଷାକୃତ କମ୍ ଦରରେ 'ପଶ୍ଚିମ ବଜାରରେ' ଉପଲବ୍ଧ ହୋଇପାରୁଛି । ଜାପାନ ଭଳି ଏକ ପ୍ରଧାନ ଉତ୍ପାଦନକାରୀ ରାଷ୍ଟ୍ର 'ପଶ୍ଚିମ ବଜାର'ରେ ପ୍ରତିଦ୍ୱନ୍ଦିତା ବ୍ୟୟସାପେକ୍ଷ ହେଉଥିବାରୁ ଏସିଆର ଅନ୍ୟ ରାଷ୍ଟ୍ରମାନଙ୍କରେ (ବିଶେଷତଃ ଅର୍ଥନୀତି ଦୃଷ୍ଟିରୁ ଅନୁନ୍ନତ) ନିଜ 'ବଜାର' ସୃଷ୍ଟି କରିବାକୁ ସକ୍ଷମ ହୋଇଛନ୍ତି । ଏହି କାର୍ଯ୍ୟକ୍ରମରେ ମାଲେୟେସିଆ ଓ ସିଙ୍ଗାପୁର ଭଳି କ୍ଷୁଦ୍ର ରାଷ୍ଟ୍ରମାନେ ସୁଯୋଗ ଯୋଗାଇ ଆସିଛନ୍ତି ।

ଏ ଦୃଷ୍ଟିରୁ ଦେଖିଲେ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଭୌଗୋଳିକ ସୀମାର ବିଲୋପ ଘଟିଛି ଓ 'ପୁଞ୍ଜିବାଦ' ତା'ର କାୟା ବିସ୍ତାର କରି ସମଗ୍ର 'ବିଶ୍ୱକୁ' ଏକ ବୃହତ୍ତର ବଜାରରେ ପରିଣତ କରିସାରିଛି । ତେଣୁ 'କେନ୍ଦ୍ରୀୟ ଅର୍ଥନୀତି' ଓ ରାଜନୈତିକ ନିୟନ୍ତ୍ରଣରୁ ମୁକ୍ତହୋଇ ବିତ୍ତର ପ୍ରସାର ଓ ସୂଚନା ବିଜ୍ଞାନର ପ୍ରସାର ଅଙ୍ଗାଙ୍ଗିଭାବେ ଜଡ଼ିତ ହୋଇପଡ଼ିଛନ୍ତି । ଏହି 'ବିଶ୍ୱ ଅର୍ଥନୀତି' ବିଭିନ୍ନ ଭାବରେ କ୍ରମ ବର୍ଦ୍ଧମାନ ଅବସ୍ଥାରେ ରହିଛି । ତେଣୁ ଏହାକୁ 'ବିଶ୍ୱ ପୁଞ୍ଜିବାଦ' ଭାବରେ ନାମିତ କରାଗଲାଣି । କୌଣସି ରାଷ୍ଟ୍ର ବା ରାଷ୍ଟ୍ରାଧୀନ ରାଜ୍ୟ ଚେଷ୍ଟାକଲେ ମଧ୍ୟ 'ବିଶ୍ୱ ପୁଞ୍ଜିବାଦ'ର ଅସଂଖ୍ୟ ସୂତ୍ରକୁ ଛିନ୍ନ କରିବା ଅବସ୍ଥାରେ ନାହାନ୍ତି । ଫଳରେ ଏହା 'ସାଂସ୍କୃତିକ ରକ୍ଷଣଶୀଳ ଗୋଷ୍ଠୀ' ଓ 'ଅଭ୍ୟୁତ୍‌ଥାନବାଦୀମାନେ' ମଧ୍ୟ 'ବିଶ୍ୱ ପୁଞ୍ଜିବାଦ'କୁ ପ୍ରତିହତ କରିବାରେ ସାମର୍ଥ୍ୟ ହରାଇ ସାରିଛନ୍ତି । ଏକ ନୂତନ 'ମିଶ୍ର-ସଂସ୍କୃତି' ପ୍ରତ୍ୟେକ ମୁହୂର୍ତ୍ତରେ ସୃଷ୍ଟି ହେଉଛି । ତେଣୁ ଅର୍ଥନୀତି କ୍ଷେତ୍ରରେ ଆଉ ପ୍ରାଚ୍ୟ ପାଶ୍ଚାତ୍ୟ ବିରୋଧାଭାସ

ଦେଖାଯାଉନାହିଁ । ଏବେ ସୂଚନା ବିଜ୍ଞାନ ନିଜର ଏକ ସ୍ୱତନ୍ତ୍ର 'ସାମ୍ରାଜ୍ୟ' ସୃଷ୍ଟି କରି ସାରିଛି । ଏହାର ନେତୃତ୍ୱ ଏବେ ସଲମାନ୍ ରସିଦ୍, କଳାକାର ହୁସେନ୍ ବା ସେଇଭଳି ପ୍ରତିନିଧି ସ୍ଥାନୀୟ ବ୍ୟକ୍ତିଙ୍କ ନିକଟକୁ ଆପଣାଛାଏଁ ଚାଲି ଆସିଛି ।

'ଜଗତୀକରଣ' ସଂପର୍କରେ 'ସାଂସ୍କୃତିକ ଭୂଗୋଳ' (Cultural Geography) ଓ 'ସାମାଜିକ ତତ୍ତ୍ୱ' କ୍ଷେତ୍ରରେ ତର୍କ-ବିତର୍କ ସୃଷ୍ଟି ହୋଇସାରିଛି । ଏହା ଫଳରେ ଯେଉଁ ନୂତନ 'ସଂଯୋଗ କେନ୍ଦ୍ର' ସୃଷ୍ଟି ହୋଇଛି, ତାହା ରାଷ୍ଟ୍ର ରାଷ୍ଟ୍ର, ରାଷ୍ଟ୍ର-ରାଜ୍ୟ ମଧ୍ୟରେ ଥିବା ସଂପର୍କରେ ଏକ 'ନୂତନ ସଂକଟ' ସୃଷ୍ଟି କରିବା ଆରମ୍ଭ କରିଛି । ଏ ଦିଗରେ ପଶ୍ଚିମ ଭୂଖଣ୍ଡରେ ପ୍ରଧାନ ଆଲୋଚ୍ୟ ଗ୍ରନ୍ଥକାର ହେଉଛନ୍ତି - Manual Castells । ସେ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି କି ବିଶ୍ୱର ବିଭିନ୍ନ ରାଷ୍ଟ୍ରମାନଙ୍କ ମଧ୍ୟରେ କ'ଣ 'ଏକ ପ୍ରକାର ଅନୁଷ୍ଠାନ' (Uniform) ଓ ତାହାର ଅର୍ଥବ୍ୟାପ୍ତି ସମ୍ଭବ ।

ଏହି ପର୍ଯ୍ୟାୟରେ ଅନ୍ୟ ଏକ ବିଷୟ ପ୍ରତି ସଂସ୍କୃତି ଆଲୋଚକମାନେ ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ସେ ପ୍ରଶ୍ନଟି ହେଉଛି 'ସ୍ଥାନୀୟ' ଓ 'ଜଗତୀୟ' ବିଭିନ୍ନତା ଭିତରେ 'ସୂତ୍ରଟି' କଣ - ସେଇଥିପାଇଁ ମଧ୍ୟ ଏକ ନୂତନ ସ୍ଲୋଗାନ ସୃଷ୍ଟି ହୋଇସାରିଛି - Think globally, Act locally. ଏଇଥିରୁ ଇଂରେଜୀରେ ଏକ ନୂତନ ପ୍ରତ୍ୟୟ ସୃଷ୍ଟି ହୋଇସାରିଛି, ତାହା ହେଉଛି "glocalisation" । ଫଳରେ 'ଦେଶାନ୍ତରୀ' ଭାବନା ବୃଦ୍ଧି ପାଇଛି—ରାଷ୍ଟ୍ର ଭିତରେ ହେଉ ବା ରାଷ୍ଟ୍ର-ରାଷ୍ଟ୍ର ଭିତରେ ହେଉ । ତେଣୁ ଲୋକଙ୍କର, ସୂଚନାର, ଅର୍ଥର, ଭାବମୂର୍ତ୍ତିର ଯେଉଁ ସୁଅ 'ରାଷ୍ଟ୍ରସୀମା'କୁ ଲୋପ କରି ସାରିଛି, ତାହା ଏକ 'ବହୁ ସାଂସ୍କୃତିକ' ସମାଜ ସୃଷ୍ଟି କରିପାରିବ କି ? ଏହାର ସପକ୍ଷରେ ଯେଉଁମାନେ ଯୁକ୍ତି କରନ୍ତି ସେମାନେ 'ବସୁଧୈବ କୁଟୁମ୍ବକମ୍'ର ସମର୍ଥକ ଓ ଯେଉଁମାନେ ଏହାର ବିପକ୍ଷରେ ଯୁକ୍ତି କରନ୍ତି ସେମାନେ 'ଅପ-ସଂସ୍କୃତି'ର ବ୍ୟାଖ୍ୟା ଭିତରେ ବନ୍ଦୀ ।

ତେଣୁ ସାହିତ୍ୟିକ ବା ସଂସ୍କୃତିପ୍ରେମୀ ବିଶେଷଜ୍ଞମାନେ ଏକ ଦିଗରେ 'ରକ୍ଷଣଶୀଳତା' (Conservative) ଓ ଅନ୍ୟ ଦିଗରେ 'ପରିବର୍ତ୍ତନକାମୀ' (Believers in culture change)ଙ୍କ ମଧ୍ୟରେ ଭାଷା, ଶୈଳୀ, ବ୍ୟାକରଣ, ଅନୁବାଦ ଆଦି ଅନେକ କ୍ଷେତ୍ରରେ 'ଜଗତୀକରଣ'ର ଆଲୋଚନା ଓ ତା'ର ସୁ/କୁ ପ୍ରଭାବ ବିଷୟରେ ଅଧିକ ଗଭୀର ଓ ଗମ୍ଭୀର ଆଲୋଚନାରେ ସମୟ ଦେଲେ, 'ତାତ୍ତ୍ୱିକତା' କ୍ଷେତ୍ରରେ ସାହିତ୍ୟିକ ଓ କଳାକାରମାନେ ଅନ୍ତତଃ ଏହି 'ପ୍ରତ୍ୟୟ'ର ବ୍ୟବହାର ଦିଗରେ ସଚେତନ ହୋଇପାରନ୍ତେ ।

ଏ ଦିଗରେ ସାହିତ୍ୟିକମାନେ ତାଙ୍କର ସୃଷ୍ଟି ପ୍ରକ୍ରିୟାରେ ବା ଆଲୋଚନାରେ କେବଳ ଅଧିକ ଆଗ୍ରହ ଦେଖାଇଲେ ଚଳିବ ନାହିଁ । ଏହାକୁ ତାତ୍ତ୍ୱିକ ଭିତ୍ତିରେ ରୂପ ଦେବାକୁ ହେବ । ଫଳରେ ସାହିତ୍ୟ ସୃଷ୍ଟି ଓ ସମୀକ୍ଷା ମଧ୍ୟରେ ସାନ୍ନିଧ୍ୟ ସୃଷ୍ଟି ହେବ ।



# ନୈତିକ ଆତଙ୍କ (Moral Panic)

ଗତ କେତେଦିନ ଭିତରେ ଛାତ୍ରଛାତ୍ରୀ ବିଶୃଙ୍ଖଳା ଓ ରାଜନୈତିକ ଦଳୀୟ କାର୍ଯ୍ୟକ୍ରମ, ବୃହତ୍ତର ସମାଜରେ ଏକ ''ଆତଙ୍କ'' ସୃଷ୍ଟି କରିଥିବା କଥା ଟି.ଭି. ଓ ଖବରକାଗଜରେ ପରିବେଷିତ ସମ୍ବାଦମାନଙ୍କରୁ ଅନୁଭୂତ ହେଉଛି । ଯେଉଁମାନେ ରାଜନୈତିକ ଶୃଙ୍ଖଳା ଓ ନୈତିକତା ସମ୍ପର୍କରେ ଉଦ୍‌ବିଗ୍ନ ସେମାନଙ୍କ ପାଇଁ ଏଭଳି ଏକ ''ପାରିଭାଷିକ'' ପ୍ରତ୍ୟୟଗତ ଚେତନାକୁ ''ପାରିଭାଷିକ ଅଭିଚର୍ଚ୍ଚା'' (Etymological Discourse) କ୍ଷେତ୍ରରେ (କେହି କେହି Discourse କୁ ''ବିମର୍ଶ'', ''ପ୍ରୋକ୍ତ'' ବା ''ଚର୍ଚ୍ଚ'' ଭାବରେ ବର୍ଣ୍ଣନା କରୁଥିବାର ଲକ୍ଷ୍ୟ କରାଯାଉଛି) ଏକ ''ପ୍ରତ୍ୟୟଗତ ମାନ୍ୟତା'' (Conceptual Respectibility) ଭାବରେ ଗ୍ରହଣ କରିଛନ୍ତି । ଯଦିଓ ''ଓଡ଼ିଆ''ରେ ବା ଅନ୍ୟ କେତେକ ଭାରତୀୟ ଭାଷାରେ, ଏହି ନୂତନ ''ପ୍ରତ୍ୟୟଗତ ଚର୍ଚ୍ଚା'' ସ୍ୱୀକୃତି ପାଇନାହିଁ, ତଥାପି ଇଂରେଜୀ ସାହିତ୍ୟରେ ଏହାକୁ Moral Panic ବା ''ନୈତିକ ଆତଙ୍କ'' ଭାବରେ ନାମିତ କରାଯାଇଛି ।

ପ୍ରତ୍ୟେକ ଦିନ ଗଣମାଧ୍ୟମ ଜରିଆରେ ଯେଉଁ ଦୃଶ୍ୟ ବା ଶ୍ରାବ୍ୟ ସମ୍ବାଦ, ଘଟଣା ସବୁ ପରିବେଷିତ ହେଉଛି, ତାହାକୁ ''ନୈତିକ ଆତଙ୍କ'' ଭାବରେ ବିଚାର ବା ଚର୍ଚ୍ଚା କରିବାର ଆବଶ୍ୟକତା ଦେଖା ଦେଇଛି । ପ୍ରଥମେ ଏହାକୁ ଗଣମାଧ୍ୟମର ସମାଜବିଜ୍ଞାନ (Sociology of Media) ବା ''ଯୁବ ସଂସ୍କୃତି'' ଭାବରେ ଉଲ୍ଲେଖ କରାଯାଉଥିଲେ ମଧ୍ୟ, ଏହା କ୍ରମଶଃ ଆତଙ୍କ ଭାବରେ ଅନୁଭୂତ ହେଉଛି ବା ଉଭା ହୋଇଛି । ପାଶ୍ଚାତ୍ୟ ଭୂଖଣ୍ଡରେ ଏହାର ''ଚର୍ଚ୍ଚାଗତ'' ବ୍ୟୁପ୍ତତ୍ତି ପ୍ରଥମେ ୧୯୮୭ ମସିହାରେ ଆରମ୍ଭ ହୋଇଥିଲା । ଓଡ଼ିଶାରେ ବିଭିନ୍ନ ପତ୍ର, ପତ୍ରିକାରେ ଯେଉଁସବୁ ଗଳ୍ପ, କବିତା ପ୍ରକାଶ ପାଉଛି ଓ ଏପରିକି ରେଖାଚିତ୍ର ଓ କଳାତ୍ମକ ଅଭିବ୍ୟକ୍ତ ଜରିଆରେ ଯେଉଁ ସାଂସ୍କୃତିକ ପରିବର୍ତ୍ତନ ଘଟୁଛି, ତାହା 'ଉପରୋକ୍ତ' ''ନୈତିକ ଆତଙ୍କ''କୁ ଦୃଢ଼ୀଭୂତ କରୁଛି । ଏହାକୁ ''ଅବକ୍ଷୟ'' ଭାବରେ ବିଚାର କରିବାକୁ ପାଶ୍ଚାତ୍ୟ ତତ୍ତ୍ୱ ବିଶାରଦ ମାନେ ବିଚାର କରୁନାହାନ୍ତି । କାରଣ ସେମାନଙ୍କ ମତରେ ''ସଂସ୍କୃତି''ର

''ରକ୍ଷଣଶୀଳତା'' ପ୍ରତି ଏହା ଏକ ଆହ୍ୱାନ । ଏହି ''ଆହ୍ୱାନ''କୁ ତେଣୁ ''ଆତଙ୍କ'' (Panic) ଭାବରେ 'ଅଭିଚର୍ଚ୍ଚା' ବିଶାରଦମାନେ ଏକ ''ନୂତନ ପ୍ରତ୍ୟୟ'' ଭାବରେ ଉପସ୍ଥାପନ କରୁଛନ୍ତି । ତେଣୁ ଏହାର ''ସ୍ୱୀକୃତି'', ନୈତିକତା ପ୍ରତି ଏକ ଆହ୍ୱାନ ଭାବରେ ଗ୍ରହଣ କରାଯାଉଛି । କେତେକ ଏହାକୁ ''ବୃହତ୍ତର ସମାଜ ବ୍ୟବସ୍ଥା''ର ପ୍ରତିପକ୍ଷ ଭାବରେ ଏକ ''ଗୋଷ୍ଠୀଗତ'' ''ନିର୍ଦ୍ଦିଷ୍ଟ ବୟସସୀମା ଜନିତ'' ଓ ଆଚରଣଗତ ପରିବର୍ତ୍ତନ ଭାବରେ ଗ୍ରହଣ କରୁଛନ୍ତି । ଏହି ''ଘଟଣା''ଗୁଡ଼ିକ ତେଣୁ ''ସାଂସ୍କୃତିକ ଗତିଶୀଳତା'' କ୍ଷେତ୍ରରେ କେତେକ ''ବଳିଷ୍ଠ ସୂଚନା'' ଭାବରେ ଗୃହୀତ ହେଉଛି । ଏହାସତ୍ତ୍ୱେ ରାଜନୈତିକ କ୍ଷେତ୍ରରେ ଏହାକୁ ନିଶ୍ଚିତ ଭାବରେ ''ଆଇନକାନୁନ ଓ ଶୃଙ୍ଖଳା'' (Law and order) ପକ୍ଷରେ ଏକ 'ଆକ୍ରମଣ' ବୋଲି ବିଚାର କରୁଛନ୍ତି । ତେଣୁ ''ଗଣତାନ୍ତ୍ରିକ ପ୍ରଶାସନିକତା'' କ୍ଷେତ୍ରରେ ଏହି ସମସ୍ୟାକୁ କିପରି ପ୍ରତିରୋଧ କରାଯାଇପାରିବ, ସେଥିପାଇଁ ଆଇନ୍‌କାନୁନ୍ ବିଶାରଦମାନେ କିପରି ଏହି ''ପରିବର୍ତ୍ତନକୁ'' ''ଆଇନ୍‌କାନୁନ୍''ର ତର୍ଜମା ଓ ସଂଶୋଧନ ଜରିଆରେ କରିବା ସମ୍ଭବ, ସେଥିପାଇଁ ଆଗଭର ହେଉଛନ୍ତି । କିନ୍ତୁ ଓଡ଼ିଶାରେ ''ସାହିତ୍ୟର ଅଭିଚର୍ଚ୍ଚା'' (Literary discourse) କ୍ଷେତ୍ରରେ ଏହା ଏବେ ବି ''ପ୍ରତ୍ୟୟଗତ ସ୍ୱଚ୍ଛତା'' ସୃଷ୍ଟି କରିପାରିନାହିଁ । ଉଦାହରଣ ସ୍ୱରୂପ, ଯୁବକ ଯୁବତୀମାନଙ୍କର ବେଶଭୂଷା, ବିବାହ ଅନୁଷ୍ଠାନର ପରିବର୍ତ୍ତନ, ସମଲିଙ୍ଗୀ ବିବାହ, ବିନୋଦନ କର୍ମୀ (Sexual Workers)ଙ୍କ ସଂପର୍କରେ ବିଧିବଦ୍ଧ ଆଇନ୍ ପ୍ରଣୟନ, ରାସ୍ତାଘାଟରେ ଭଙ୍ଗାରୁଜା, ପୋଡ଼ାପୋଡ଼ି ଆଦି ଘଟଣା କ୍ରମଶଃ ବଢୁଛି । କିନ୍ତୁ ଏହାକୁ ''ନୈତିକ ଆତଙ୍କ'' ଭାବରେ ଗ୍ରହଣ କରି, ସେଥିପାଇଁ ଅନୁରୂପ ବ୍ୟବସ୍ଥା ମାନ ବିଚାରକୁ ନେଇ ନୂତନ ''ଶୃଙ୍ଖଳା ବିଧି'' ପ୍ରସ୍ତୁତ କରିବାରେ କ୍ଷେତ୍ରରେ ''କାଳ୍-କ୍ଷେପଣ'' ନୀତି ଲକ୍ଷ୍ୟ କରାଯାଉଛି । ଅସ୍ତ୍ରଶସ୍ତ୍ରର ଉନ୍ମୁକ୍ତ ପ୍ରଦର୍ଶନ ଓ ବ୍ୟବହାର, ''ନିଶା ଔଷଧ''ର ଅବାଧ ବ୍ୟବସାୟ, ଯୌନ ଉଶୃଙ୍ଖଳତା, ଭ୍ରୁଣହତ୍ୟା, ବ୍ୟାଙ୍କ ଲୁଟ ଆଦି ହିଂସାତ୍ମକ ଘଟଣା କ୍ରମଶଃ ବୃଦ୍ଧି ପାଉଛି । ଏହାକୁ 'ଅଧଃପତନ' ବା 'ଅବକ୍ଷୟ' ଭାବରେ ନାମିତ କରି ଏହାର ବିରୋଧ କରିବା ବଦଳରେ ଏହାକୁ ଏକ ଆତଙ୍କ ଜନିତ ପରିସ୍ଥିତି ଭାବରେ ବିଚାର କରି ଏହାର ''ସମାଧାନ''ର ସୂତ୍ର ବାହାର କରିବା କେବଳ ରାଜନୀତି, ଅର୍ଥନୀତି ବା 'ସମାଜନୀତି'ର କାର୍ଯ୍ୟନୁହେଁ - ''ସଂସ୍କୃତି ବିଶାରଦମାନେ'',

''ସାଂସ୍କୃତିକ ତତ୍ତ୍ୱ'' (Cultural Theory), ସାହିତ୍ୟ ଓ ବିଭିନ୍ନ କଳାତ୍ମକ ଅଭିବ୍ୟକ୍ତି (ସଂଗୀତ, ନୃତ୍ୟ, ଚିତ୍ରାଙ୍କନ ଆଦି) କ୍ଷେତ୍ରରେ ଯେଉଁମାନେ ''ଚର୍ଚ୍ଚା'' କରି ଆସିଛନ୍ତି, ସେମାନଙ୍କୁ ମଧ୍ୟ ଏହି ''ପ୍ରତ୍ୟୟଗତ ବ୍ୟବହାର'' (Conceptual Use) ପ୍ରତି ଧ୍ୟାନ ଦେବାକୁ ପଡ଼ିବ । ଫଳରେ ''ଅଭିଚର୍ଚ୍ଚା ବିଶାରଦମାନେ'' ''ନୈତିକ ଆତଙ୍କକୁ'' ଏକ ପ୍ରତ୍ୟୟଗତ ମାନ୍ୟତା ଦେଇ ପାରିବେ । ଏ ଦିଗରେ ଗଣମାଧ୍ୟମର ଦାୟିତ୍ୱ ଅଧିକ । କାରଣ ସେମାନେ ହିଁ ଏସବୁ ଘଟଣାର ''ପରିବେଷଣ'' କରି ଏ ଦିଗରେ ଜନମାନସକୁ ପ୍ରଭାବିତ କରୁଛନ୍ତି । ତେଣୁ ''ଗଣ ମାଧ୍ୟମ'' ସଂସ୍କୃତି ଚର୍ଚ୍ଚା କ୍ଷେତ୍ରରେ ଯେଉଁ ଭୂମିକା ଗ୍ରହଣ କରି ଆସିଛନ୍ତି, ସେମାନେ ହିଁ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏହି ''ପ୍ରତ୍ୟୟ''ର ଏକ 'ମାନ୍ୟତା' ଦେଇପାରିବେ ।

ଏ ସଂପର୍କରେ ଗାନ୍ଧିଜୀ ଯେଉଁ ''ସାତୋଟି ପାପ'' କଥା ଉଲ୍ଲେଖ କରିଥିଲେ, ତାହାକୁ ''ପାପ'' ନ କହି ବରଂ ''ଅତ୍ୟାଧୁନିକ ସମସ୍ୟା'' ଭାବରେ ବିଚାରକୁ ନେବାକୁ ପଡ଼ିବ । ସେହିପରି ଗାନ୍ଧିଜୀଙ୍କର ''ଏକାଦଶ ବ୍ରତ''କୁ ସମସ୍ୟା ସମାଧାନ କ୍ଷେତ୍ରରେ କେତେକ ''ପ୍ରତ୍ୟୟ'' ଭାବରେ ଗ୍ରହଣ କରାଯାଇପାରେ । ତେଣୁ ''ପ୍ରାଚ୍ୟ ଓ ପାଶ୍ଚାତ୍ୟ'' ଜୀବନଧାରା ଭିତରେ ଯେଉଁ ସମ୍ମିଶ୍ରଣ ଚାଲିଛି - ତା'କୁ କିପରି ଏକ ''ଶୃଙ୍ଖଳାର ପରିଧି'' ଭିତରେ ବିଚାର କରାଯାଇ ପାରିବ, ସେ ସଂପର୍କରେ ''ସୂଚନା'' ଉପସ୍ଥାପନ କରିବା ଗଣ ମାଧ୍ୟମର ଦାୟିତ୍ୱ । କେବଳ ବର୍ଣ୍ଣନା କରିଦେଲେ, ଚଳିବ ନାହିଁ - ଏହାର ସମାଧାନର ଉପାୟ ସଂପର୍କରେ ଅଧିକ ସ୍ଥାନ ଦେବାକୁ ପଡ଼ିବ । ଏ କ୍ଷେତ୍ରରେ ଇଂରାଜୀ ସାଂସ୍କୃତିକ ଜଗତରେ ଦୁଇଟି ଗ୍ରନ୍ଥ କଥା ଉଲ୍ଲେଖ କରୁଛି - 1. Stanely Cohen (Ed.1981), *Folk Devils and Moral Panic* ! 2. Stanely Cohen and Jack Young (Eds) (1981), *The Manufacture of News : Deviance, Social Problems and the Media.* ଆମର ସାହିତ୍ୟ ଓ ସଂସ୍କୃତିର ଆଲୋକଚକମାନେ ଏ ଦିଗରେ ଧ୍ୟାନ ଦେବା ଆବଶ୍ୟକ ।



# ନୀତିଧର୍ମ ଭିତ୍ତିକ ନେତୃତ୍ୱ
# (Leadership based on Ethics)

ଓଡ଼ିଆ ଭାଷାରେ, ଇଂରାଜୀରେ ବ୍ୟବହୃତ ଦୁଇଟି ଶବ୍ଦ 'ମୋରାଲିଟି' ଓ ଏଥିକ୍ସର କୌଣସି ପରିଭାଷା ଅଛି ବୋଲି ମୋତେ ଜଣାନାହିଁ । ଉଭୟ ଶବ୍ଦକୁ ନୈତିକତା ବୋଲି ବ୍ୟବହାର କରାଯାଏ । ଗୁଜରାଟୀ ଭାଷାରେ ଗାନ୍ଧିଜୀ ଏହି ପାର୍ଥକ୍ୟ ନଥିବା ଦେଖି 'ଏଥିକ୍ସ' ପାଇଁ 'ନୀତିଧର୍ମ' ଶବ୍ଦର ବ୍ୟବହାର କରୁଥିଲେ । ମୋର ମନେହୁଏ ଏହି ପରିଭାଷାର ବ୍ୟବହାର ଓଡ଼ିଆରେ ମଧ୍ୟ କରାଯିବାର କୌଣସି ପ୍ରତିବନ୍ଧକ ନାହିଁ । ଅବଶ୍ୟ ପରିଭାଷା ବିଜ୍ଞାନୀମାନେ ଏ ଦିଗରେ ଅଧିକ ଆଲୋକପାତ କରିବା ଆବଶ୍ୟକ । ଏ ପ୍ରବନ୍ଧରେ 'ନୀତିଧର୍ମ' ସମ୍ବଳିତ ବା ନୀତିଧର୍ମର ମୂଳଦୁଆ ଉପରେ ଗଠିତ ନେତୃତ୍ୱ କିପରି ଏକବିଂଶ ଶତାବ୍ଦୀ ଭାରତରେ ଓ ଓଡ଼ିଶାରେ - ବିଶେଷ ଭାବରେ ଯୁବମାନସଙ୍କୁ ପ୍ରଶିକ୍ଷିତ କରିବା ଆବଶ୍ୟକ ତାହା ହିଁ ସୂଚାଇ ଦିଆଯାଇଛି । (ଏ ଦିଗରେ ରବୀନ୍ଦ୍ର ବର୍ମାଙ୍କର 'ଗାନ୍ଧିଜୀଙ୍କ ଦୃଷ୍ଟିରେ ନୀତିଧର୍ମ' ଶୀର୍ଷକ ଇଂରାଜୀ ଲେଖାଟି ମୋ ବିଚାରରେ ଏକ ଉଲ୍ଲେଖଯୋଗ୍ୟ ପ୍ରବନ୍ଧ) ।

ବେଳେ ବେଳେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉତ୍ଥାପିତ ହୋଇଥାଏ ଏହା କ'ଣ ସତରେ ଆଉ ଏକ ଦାର୍ଶନିକ ବାଖ୍ୟା ଯାହାକୁ ଯୁବମାନସ ଗ୍ରହଣ କରିବେ ? କିନ୍ତୁ ଏ ପ୍ରଶ୍ନର ସମାଧାନ ପାଇଁ ଆମକୁ ଶାସ୍ତ୍ରୀୟ ବାଣୀ ଉଦ୍ଧାର କରିବାର ଆବଶ୍ୟକତା ନାହିଁ । 'ଲୋକ ସାହିତ୍ୟ'ରେ ଏହାର ଯଥେଷ୍ଟ ଉପାଦନ ରହିଛି । ନୀତି/ଅନୀତି, ରୁଚି/ସୁରୁଚି ଭଳି ଗହନ କଥା ଗୁଡ଼ିକ ସାଧାରଣ ଲୋକେ ହିଁ ତାଙ୍କ ବକ୍ତବ୍ୟରେ, ଗପସପରେ କାହାଣୀରେ ହିଁ ବ୍ୟବହାର କରିଥାନ୍ତି । ତାହାହିଁ ଆମର ଆଲୋଚନାରେ ପ୍ରଥମେ ପ୍ରସାରିତ ହେବା ଫଳରେ ହିଁ ଆମେ ନୀତିଧର୍ମ କ'ଣ ବୁଝିପାରିବୁ । ଏକଥା ଯେ ଆମେ ଜାଣି ନାହୁଁ, ଏପରି ନୁହେଁ ବରଂ ତାହା ପ୍ରତି ଆମେ ଧ୍ୟାନ ଦେଇ ନାହୁଁ ।

ସାମାଜିକ କ୍ଷେତ୍ରରେ ଏହାର ପ୍ରୟୋଗ ଯେ ଓଡ଼ିଶାରେ ଆରମ୍ଭ ହୋଇନାହିଁ ଏ କଥା ବି ନୁହେଁ । ଆମର ଲିଖିତ ସାହିତ୍ୟ ପରମ୍ପରାରେ ଥିବା 'ଲୋକ ସାହିତ୍ୟ ନିର୍ଭର ନୀତିଧର୍ମ' ପ୍ରଚୁର ଥିଲେ ବି ଏ ଦିଗରେ ଆମର ପାରମ୍ପରିକ ପ୍ରଶିକ୍ଷଣ କ୍ଷେତ୍ରରେ ଅବହେଳା ଯୋଗୁ ଆମର ଗ୍ରାମ ପୁନଃର୍ଗଠନ, ଗ୍ରାମ ସହଯୋଗ ଭିତ୍ତିକ ବିକାଶ

ବିଷୟରେ ସାହିତ୍ୟକ କୃତିରେ ଅନେକ ଉଦାହରଣକୁ ବିଚାରକୁ ନିଆଯାଇ ନାହିଁ । ଏପରିକି ଜଣେ ଗ୍ରନ୍ଥକାରଙ୍କ ରଚନାବଳୀରୁ ଏହାକୁ ଚୟନ କରି ନୀତିଧର୍ମ ଜରିଆରେ ନେତୃତ୍ୱ ଗଠନର ଶୈଳୀକୁ ପୁନରୁତ୍ଥାପନ କରାଯାଇପାରିବ । ଏପରିକି ବର୍ତ୍ତମାନର ପରିଚାଳନା ବିଦ୍ୟାରେ ଓ ଲୋକସମ୍ପର୍କ କ୍ଷେତ୍ରରେ ଏହି ନେତୃତ୍ୱର ଧାରାକୁ ପ୍ରତିଷ୍ଠା କରିବା ପାଇଁ ଯୁବଗୋଷ୍ଠୀଙ୍କୁ ପ୍ରସ୍ତୁତ କରିବା ମଧ୍ୟ ବରିଷ୍ଠ ନାଗରିକମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ । ଫଳରେ ଗଣତାନ୍ତ୍ରିକ ବ୍ୟବହାରରେ ଯେଉଁ ନୂତନ ଆହ୍ୱାନ ସୃଷ୍ଟି ହୋଇସାରିଛି, ତାହା ମଧ୍ୟ ଗଣତନ୍ତ୍ରକୁ ଆଦରଣୀୟ କରିପାରିବ । ଏ ଦିଗରେ ଦଳୀୟ ରାଜନୀତିରୁ ଉର୍ଦ୍ଧ୍ୱକୁ ଉଠି ନପାରିଲେ ଗଣତନ୍ତ୍ର ଆମ ପାଇଁ ବିପଦ ସୃଷ୍ଟି କରିବାର ସମ୍ଭାବନା ରହିଛି । ଓଡ଼ିଆରେ ଏବେ ବି ଗାଁ ଗହଳରେ ‘‘ଧରମ ବୁଡ଼ିଗଲାରେ ବାପା’’ କହିବା ବେଳେ ସେମାନେ ଯେଉଁ ଧରମ କଥା କହନ୍ତି – ତାହା ହିଁ ନୀତିଧର୍ମର ମୂଳଦୁଆ ବା ଆଜିର ଭାଷାରେ ଭିତ୍ତିଭୂମି ।

ଭାରତରେ ଓ ଓଡ଼ିଶାରେ ମଧ୍ୟ ଏହି ନୀତିଧର୍ମ ଭିତ୍ତିକ ନେତୃତ୍ୱ ବିରଳ ନୁହେଁ । ଗାଁ ଗହଳରେ ବି ଏ ନେତୃତ୍ୱର ଧାରା ପ୍ରଚଳିତ । ହୁଏତ ପ୍ରଚାର ପ୍ରସାରଣ ଆବହାଓ୍ୱାରେ ସେମାନଙ୍କୁ ଚିହ୍ନିବା ବା ସେମାନଙ୍କର ମାର୍ଗକୁ ଅନୁସରଣ କରିବା ଲୋକଙ୍କର ସଂଖ୍ୟା ସୀମିତ ହୋଇପାରେ । କିନ୍ତୁ ଏ ପ୍ରକାର ନେତୃତ୍ୱ ବଳବତ୍ତର ହେଲେ ଭବିଷ୍ୟତ ଆଶଙ୍କାପ୍ରଦ ବା ଆତଙ୍କପଦ ହେବାରୁ ରକ୍ଷା ମିଳିଯାଇପାରେ । ଅତୀତ ଓଡ଼ିଶାରେ ସାଲବେଗ ବା ଦାସିଆ ବାଉରୀ ବା ଧର୍ମପଦର କାହାଣୀ (ଏହାର ଐତିହାସିକତା ବିବଦମାନ ହେଲେ ବି) ଲୋକଙ୍କୁ ଉନ୍ମାଦିତ କରୁଛି । ବର୍ତ୍ତମାନର ସମସ୍ୟା ବହୁଳ ଜୀବନଯାତ୍ରା ମଧ୍ୟରେ ସଦାସର୍ବଦା ‘ଜାଗ୍ରତ’ (ଏହାର ଅନ୍ୟ ନାମ ‘ସଚେତନତା’ ହୋଇପାରେ) ରହିବା ସବୁଠାରୁ ଆବଶ୍ୟକ ।

ଏଥିପାଇଁ ମୋଟା ମୋଟା ଶାସ୍ତ୍ରୀୟ ପୁସ୍ତକ ଅଧ୍ୟୟନ କରିବାଠାରୁ ଲୋକମୁଖରେ ପ୍ରଚଳିତ ଦୈନନ୍ଦିନ ଜୀବନର ଘଟଣା ପ୍ରବାହ ଭିତରେ ଯେଉଁ ସମାଧାନର ସୂତ୍ର ରହିଛି, ତାହା ହିଁ ‘ନୀତିଧର୍ମ ଭିତ୍ତିକ ନେତୃତ୍ୱ’ର ଧାରାକୁ ବହୁଗୁଣିତ କରିପାରିବ । ଏ ଦିଗରେ ଲୋକ କାହାଣୀ, ଲୋକ ଗୀତ, ପ୍ରବାଦ ଆଦିରେ ଯଥେଷ୍ଟ ଉଦାହରଣ ରହିଛି । ଏ ସବୁକୁ ଉଦ୍ଧାର କରି, ଏହାର ରକ୍ଷଣାବେକ୍ଷଣ କରି ତାର ପ୍ରୟୋଗ ପରୀକ୍ଷାର ଧାରାକୁ ଅଧିକ ପ୍ରସାରକ୍ଷମ କରିବା ଆବଶ୍ୟକ ।

ଓଡ଼ିଶାରେ ଅସଂଖ୍ୟ ପ୍ରାଥମିକ, ମାଧ୍ୟମିକ ଓ ଏପରିକି ବିଶ୍ୱବିଦ୍ୟାଳୟ ସ୍ତରରେ ଏହି ଚିନ୍ତାଧାରାର ପ୍ରସାର ପାଇଁ ଉଦ୍ୟମକୁ ବହୁଗୁଣିତ କରିବା ଆବଶ୍ୟକ । ଫଳରେ ଶାନ୍ତି ଓ ନ୍ୟାୟ ପ୍ରତିଷ୍ଠା ହୋଇପାରିବ । କେବଳ ବୁଦ୍ଧି ବା ଜ୍ଞାନର ପରିମାପରେ ବ୍ୟସ୍ତ ନରହି, ଏଥିପାଇଁ ଚାରିତ୍ରିକ ପରିବର୍ତ୍ତନ ଦିଗରେ ଶିକ୍ଷକ ବା ଅଧ୍ୟାପକ/ ଅଧ୍ୟାପିକାମାନେ ଅଧିକ ଧ୍ୟାନ ଦେବାକୁ ମଧ୍ୟ ବିଚାରକୁ ନେବାକୁ ପଡ଼ିବ । ସେଇଥିପାଇଁ ଗାନ୍ଧିଜୀ 'ଚରିତ୍ର ବିହୀନ ଶିକ୍ଷା'କୁ ସାମାଜିକ ପାପ ବୋଲି କହୁଥିଲେ । ସେଇଭଳି ରାମକୃଷ୍ଣଙ୍କ ନନ୍ଦଙ୍କ ଭଳି ବ୍ୟକ୍ତି 'ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି' ଭଳି ପ୍ରାର୍ଥନା ରଚନା କରିଥିଲେ ।

ଜଣେ ପାଶ୍ଚାତ୍ୟ ଦେଶର ଅଧ୍ୟାପକ ଥରେ କହିଥିଲେ ଗାନ୍ଧୀ ଓ ମାର୍ଟିନ୍ ଲୁଥର କିଙ୍ଗ ବିଂଶ ଶତାବ୍ଦୀର ଦୁଇଜଣ ନୀତିଧର୍ମ ଭିତ୍ତିକ ନେତା ଥିଲେ । ସେମାନଙ୍କର ନୈତିକ ପରମ୍ପରାରେ ଅଗାଢ଼ ବିଶ୍ୱାସ ଓ ସେଥିପାଇଁ ଜୀବନବ୍ୟାପୀ କାର୍ଯ୍ୟକ୍ରମ ସେମାନଙ୍କ ଦେଶରେ ଏହି ଚାରିତ୍ରିକ ଦିଗକୁ ଦୃଢ଼ତା ଦେଇଥିଲା । ଏହି ପରମ୍ପରାର ଉତ୍ସ ଥିଲା - ଗାନ୍ଧିଜୀଙ୍କ କ୍ଷେତ୍ରରେ ଭାରତୀୟ ଧର୍ମ ପରମ୍ପରାର ଉତ୍ଥାନ ଓ ମାର୍ଟିନ ଲୁଥର କିଙ୍ଗ, ଜୁନିୟରଙ୍କର 'ଆଫ୍ରୋ ଆମେରିକାନ୍ ଚର୍ଚ୍ଚ' ପରମ୍ପରାର ପ୍ରୟୋଗ ପରୀକ୍ଷା । ଏହା ସମ୍ବେଦନଶୀଳତାକୁ ଆଧାର କରି ହିଁ ଗଢ଼ି ଉଠିଥିଲା । ଏହାକୁ ପ୍ରତିଷ୍ଠା ଦେବା ପାଇଁ ନୀରବ ପ୍ରତିବାଦ ହିଁ ଏକ ମାର୍ଗ ଥିଲା । ସ୍ୱାଭାବିକ ଭାବରେ ଏହି ନୀରବ ପ୍ରତିବାଦ ହିଁ 'ଅହିଂସ ସତ୍ୟାଗ୍ରହ'ର ଅନ୍ୟତମ ନାମ ।

ମନେ ହେଉଛି ଆଗାମୀ ବଂଶଧରମାନଙ୍କୁ ଏହି ନୀତିଧର୍ମ ଭିତ୍ତିକ ନେତୃତ୍ୱର ଧାରା ପ୍ରତି ସଚେତନ ବା ଜାଗ୍ରତ ରଖିବା ହେଉଛି ବରିଷ୍ଠମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ । ଏକ ବିଂଶ ଶତାବ୍ଦୀର ପୃଥିବୀ ସଚେତନ ନାଗରିକମାନଙ୍କଠାରୁ ଏହି ପ୍ରେରଣା ଓ ମୁରବୀତ୍ୱ ଦାବି କରୁଛି । ଏହି ସଚେତନତାକୁ ଜାଗ୍ରତ କରି ରଖିବା ଫଳରେ ବହୁ ପରାଜୟର ଗ୍ଲାନିରେ ଜର୍ଜରିତ ଜନସମାଜକୁ ନୀତିଧର୍ମ ପ୍ରତି ଆକୃଷ୍ଟ କରିହେବ । 'ନୀତିଧର୍ମ' ଭିତ୍ତିକ ନେତୃତ୍ୱ ହିଁ ଏହି ଶତାବ୍ଦୀର ବଡ଼ ଆହ୍ୱାନ ।



# ପଢ଼ିବା ଅଭ୍ୟାସ (Reading)

ଏହାକୁ ଯଦି ସଂସ୍କୃତିର ପ୍ରବାହମାନତାର ସୀମାନ୍ତ ଭିତରେ ବୁଝିବାକୁ ଚେଷ୍ଟା କରାଯାଏ, ତେବେ ଉଭୟ ସାଧାରଣ ଓ ପ୍ରାଜ୍ଞପାଠକଙ୍କ କ୍ଷେତ୍ରରେ ଏହା ଏକ ବ୍ୟାପକ ବିଷୟ ବୋଲି ଧାରଣା କରିହୁଏ । ସାଧାରଣତଃ ''ପଢ଼ିବା ଅଭ୍ୟାସ'' କଥା କହିଲାବେଳେ ଏହା ସହିତ ''ପାଠର ବ୍ୟାଖ୍ୟା'' ଓ ''ଅଭିଚର୍ଚ୍ଚା''ର (Discourse) ଦିଗନ୍ତକୁ ବିଚାରକୁ ନିଆଯାଇଥାଏ । ପୁଣି ଏହି ''ପଢ଼ିବା ଅଭ୍ୟାସ'' ମଧ୍ୟ ସଂକେତ, ଚିହ୍ନ ଆଦି ପଢ଼ିବା କଥା ବିଚାରକୁ ନେଇଥାଏ । କିନ୍ତୁ ସାଧାରଣ ଭାବରେ ଏହାକୁ ଲିପି ଚିହ୍ନିବା, ମନେ ରଖିବା, ଲେଖି ଶିଖିବା, ପୁଣି ତା'ରି ସାଙ୍ଗେ ସାଙ୍ଗେ ଲିପି ପରିଚୟରୁ ଅର୍ଥ ପରିଚୟର ସୂତ୍ର ମଧ୍ୟ ଖୋଜା ଯାଇଥାଏ । ପୁଣି ବାକ୍‌ଭଙ୍ଗୀରୁ, ଅଭିନୟରୁ, ସାମାଜିକ କ୍ରିୟା, ପ୍ରକ୍ରିୟାରୁ ମଧ୍ୟ ଅନୁଭବର ନିକିତିରେ ତଉଲି ସେଥିରୁ ଅର୍ଥ ଚିହ୍ନଟ କରିବା ଓ ସେହି ଅର୍ଥକୁ ପ୍ରୟୋଗ କରିବା ମଧ୍ୟ ''ପଢ଼ିବା ଅଭ୍ୟାସ'' ଭିତରେ ବିଚାରକୁ ନିଆଯାଇଥାଏ । ''ପାଠ'' (Text)ର ବିଷୟବସ୍ତୁ, ସାମାଜିକ ଓ ସାଂସ୍କୃତିକ ପରିବେଶରୁ ହିଁ ରଚନା କରାଯାଇଥାଏ । ତେଣୁ କେଉଁ ପାଠ କେତେବେଳେ କେତେ ସମୟ, କେଉଁଥିପାଇଁ ପଢ଼ିବାକୁ ହେବ, ତାହା ମଧ୍ୟ ''ପାଠ ରଚନା ଓ ପାଠ''ର ବିଷୟବସ୍ତୁକୁ ପ୍ରଭାବିତ କରିଥାଏ । ତେଣୁ କୌଣସି ''ପାଠ'' (Text) ବା ସଂକେତ ଆଦି (semiotic) ପଢ଼ିବାକୁ ହେଲେ, ତାହା ବିଭିନ୍ନ ବୟସ ଓ ଜ୍ଞାନ ଆହରଣର ଅଭୀପ୍ସା ଉପରେ ନିର୍ଭର କରେ । 'ରୋଗ' ହେଲେ ଯେପରି ଡାକ୍ତର ବା କବିରାଜ ବା ତୁଟୁକାଙ୍କ ''ପ୍ରେସକ୍ରିପସନ୍'' ଠାରୁ ଫୁଙ୍କା ଫୁଙ୍କି ପର୍ଯ୍ୟନ୍ତ ପଢ଼ିବାକୁ (ଜାଣିବାକୁ) ବା ଅନ୍ୟ କାହାଦ୍ୱାରା ପଢ଼େଇବାକୁ ପଡ଼େ, ଠିକ୍ ସେହିପରି ଶିକ୍ଷାନୁଷ୍ଠାନ ପରିକଳ୍ପନାରେ ବିଭିନ୍ନ ବୟସର ପିଲେ ବା ବୁଢ଼ାମାନେ ବା ମଧ୍ୟବୟସୀମାନେ କ'ଣ ପଢ଼ିବେ (ଅର୍ଥାତ୍ କି ପାଠ ପଢ଼ିବା) ତା ପାଇଁ ଯୋଜନା ତିଆରି ହୁଏ, ପୁଣି ଆବଶ୍ୟକ ପଡ଼ିଲେ, ସେ ଯୋଜନାରେ ପରିବର୍ତ୍ତନ କରାଯାଏ । ସେହିପରି ''ପଢ଼ିବା ଅଭ୍ୟାସ'' - ମଧ୍ୟ ସାମାଜିକ ପରିବର୍ତ୍ତନ ଫଳରେ ପରିବର୍ତ୍ତିତ ହୋଇଥାଏ । ତାତ୍ତ୍ୱିକତା କ୍ଷେତ୍ରରେ (ପରିସଂଖ୍ୟାନଗତ ତଥ୍ୟ ହେଉ ବା ତାତ୍ତ୍ୱିକ ବିଚାରଣା ହେଉ) ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହେଉ ବା ପ୍ରଶିକ୍ଷଣ କ୍ଷେତ୍ରରେ ହେଉ, ସ୍ଥାନ ଭେଦରେ, ଲିଙ୍ଗ ଭେଦରେ, ସାମାଜିକ ପରିବେଶର ବିଭିନ୍ନତା ଭିତରେ ଅଭ୍ୟାସ ପରିବର୍ତ୍ତିତ ହୋଇଥାଏ । ଏହି ପରିବର୍ତ୍ତନର ଧାରାକୁ ବିଶ୍ଳେଷଣ କରି ''ଶିକ୍ଷା ବିଷୟର ଶୃଙ୍ଖଳା'' (Education as a discipline) ସହିତ ପରିଚିତ ଗବେଷକ, ତଥ୍ୟ ବିଶାରଦମାନେ ''ପଢ଼ିବା ଅଭ୍ୟାସ'' ସଂପର୍କରେ ସଚେତନ ଆଗ୍ରହ ଦେଖାଇବା ସ୍ୱାଭାବିକ ।

ତେଣୁ ଡକ୍ଟର ଜଗନ୍ନାଥ ମହାନ୍ତି ଏପରି ଏକ ଆଲୋଚନା ଚକ୍ରରେ ମତେ ଅଧ୍ୟକ୍ଷତା କରିବାକୁ ଅନୁରୋଧ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଇବା ସହିତ ଯେଉଁ ଆଲୋଚକମାନେ ସେମାନଙ୍କର ଚିନ୍ତା ଓ ଚେତନାର ଲିପିକରଣ କରିଛନ୍ତି, ସେ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି । ସେମାନଙ୍କର ଆଲୋଚନା ଏ ''ବିଷୟ''ରେ କିଛି ପଢ଼ିବା ପାଇଁ ଅଳ୍ପ ସମୟ ହେଲେ ବି ମତେ ଅଭ୍ୟସ୍ତ କରାଇ ପାରିଥିବାରୁ ସେମାନଙ୍କ ପ୍ରତି ମୋର କୃତଜ୍ଞତା ଜ୍ଞାପନ କରୁଛି ।

ଏବେ ସାମ୍ପ୍ରତିକ ସମାଜରେ, ପ୍ରଜ୍ଞାନ (Technology) ର ବ୍ୟବହାର କ୍ଷେତ୍ରରେ ଯେଉଁ ଅଭୂତ ପୂର୍ବ ପରିବର୍ତ୍ତନ ଦେଖା ଦେଇଛି, ତାହାର ପ୍ରଭାବ ଆମ ଓଡ଼ିଶାର ସାଂସ୍କୃତିକ ପରିସୀମା ଭିତରେ କି ପ୍ରକାର ରୂପ ନେଇପାରେ, ସେ ସମ୍ପର୍କରେ ଆଶା ଓ ଆଶଙ୍କା ଉଭୟ ଦେଖାଦେବା ସ୍ୱାଭାବିକ । 'ପ୍ରଜ୍ଞାନ'ର ବ୍ୟାପକତା ଅନେକ ପାଠକଙ୍କୁ ''ବହି ପାଠ'' ପଢ଼ିବା କ୍ଷେତ୍ରରେ ଥିବା ଆବଶ୍ୟକତାକୁ ଅସ୍ୱୀକାର କରିବାର ମନୋଭାବ ଦେଖା ଦେଇଛି । ଏହା ଏକ ଦିଗରେ 'ଆଶଙ୍କା' ସୃଷ୍ଟି କରୁଥିଲା ବେଳେ ଅନ୍ୟ ଦିଗରେ ଏହା 'ଆଶା'ର ସୂଚନା ମଧ୍ୟ ଦେଉଛି । ଅର୍ଥାତ୍ ''ବହିପାଠ''ର ସୀମିତତାଠାରୁ ଅନ୍ୟ ଗଣ ଯୋଗାଯୋଗ ମାଧ୍ୟମରେ ପରିବେଷିତ ଜ୍ଞାନ ଆହରଣ କରିବା କ୍ଷେତ୍ରରେ ଆଗ୍ରହ ମଧ୍ୟ ବଢ଼ିଛି ।

ଓଡ଼ିଶାର ''ଶିକ୍ଷା ଜଗତ'' ବହୁଧା ବିଭକ୍ତ । ଏଠାରେ ନିରକ୍ଷରଙ୍କର ସଂଖ୍ୟା ପ୍ରାୟ ୫୦% ହେଲାବେଳେ ହାଇସ୍କୁଲରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ପୁଣି ବିଭିନ୍ନ ବିଷୟ ଅନୁରକ୍ତ (ଯେପରି କମ୍ପ୍ୟୁଟର) ପାଠକଙ୍କୁ ମଧ୍ୟ ଦେଖିବାକୁ ମିଳେ ।

ପୁଣି ''ପଢ଼ିବା ଅଭ୍ୟାସ''ର ତାତ୍ତ୍ୱିକତା ଭିତରକୁ ଫେରିଆସେ । ସାଧାରଣ ସାହିତ୍ୟ ଚର୍ଚ୍ଚାରେ ପାଠକମାନଙ୍କୁ ପ୍ରଶ୍ନ କରି ତାଙ୍କଠାରୁ ଉତ୍ତର ଖୋଜିବା (Reader response theory) ଯେପରି ଏକ ପରିସଂଖ୍ୟାନଗତ ମାର୍ଗ, ଠିକ୍ ସେହିପରି ସମାଜବିଜ୍ଞାନ କ୍ଷେତ୍ରରେ ''ଗ୍ରାହିକା ଶକ୍ତି'' (Reception theory) ମଧ୍ୟ ଅନୁସୃତ ହେଉଛି । ସାଧାରଣ ଭାବରେ କହିଲେ ''ପାଠକ''ର ମନରେ ଯେଉଁ କ୍ରିୟା ପ୍ରତିକ୍ରିୟା ଦେଖାଦିଏ, ତାରି ଭିତ୍ତିରେ ''ପଢ଼ିବା ଅଭ୍ୟାସ''କୁ ଆଲୋଚନା କରିବା ଯେପରି ଆବଶ୍ୟକ, ପଢ଼ିବା ଅଭ୍ୟାସ ଦ୍ୱାରା ''ଗ୍ରାହିକା ଶକ୍ତି'' ବଢ଼ୁଛି କି କମୁଛି କି ପରିବର୍ତ୍ତିତ ହେଉଛି, ତାହାର କଳନା ମଧ୍ୟ ଆବଶ୍ୟକ ।

ଉଦାହରଣ ସ୍ୱରୂପ ଏଠାରେ ଗାନ୍ଧିଜୀଙ୍କ ଦ୍ୱାରା ଲିଖିତ ଓ ବହୁଳ ପ୍ରସାରିତ ''ବାଲପୋଥି''କୁ ବିଚାରକୁ ନିଆଯାଉ । ଏଥିରେ ଯେଉଁ ବାରଟି ''ପାଠ'' ରଖାଯାଇଛି-ସେଥିରେ ଏପରି ସବୁ ବିଷୟ ରଖାଯାଇଛି, ଯାହାକୁ ପଢ଼ିବାକୁ

କୋମଳମତି ବାଳକ/ବାଳିକାମାନେ ଆଗ୍ରହ ପ୍ରକାଶ କରିବେ । (କିନ୍ତୁ ଶିକ୍ଷାବିତ୍‌ମାନେ ଏହି ବହିର ଉପାଦେୟତା ସମ୍ପର୍କରେ ବିଶ୍ଳେଷଣ ମଧ୍ୟ କରି ନାହାନ୍ତି) । ତେଣ ବିଷୟବସ୍ତୁ ନିର୍ବାଚନ, ଶବ୍ଦ ଯୋଜନା, ବ୍ୟାକରଣ ଶୈଳୀ ଆଦି ଅନେକ ବିଷୟ ସହିତ ''ପଢ଼ିବା ଅଭ୍ୟାସ''ସଂପୃକ୍ତ । ଧରନ୍ତୁ ଆପଣ ଗୋଟିଏ ଚିଠି ଲେଖିଛନ୍ତି । ସେହି ଚିଠିରେ ଗୋଟିଏ ଠିକଣା ଲେଖିଛନ୍ତି । ସେ ''ଠିକଣା ପଢ଼ିବା'', ଡାକ ବାଣ୍ଟୁଥିବାର ଲୋକର ଅଭ୍ୟାସ - କାରଣ ଏହା ତାହାର ବୃତ୍ତି ବା ଜୀବିକା ସହିତ ଜଡ଼ିତ । ତେଣୁ ''ପଢ଼ିବା ଅଭ୍ୟାସ''ର କେତେକ କାର୍ଯ୍ୟକାରୀ ଦିଗ ମଧ୍ୟ ରହିଛି । ଡାକବାଲା ଚିଠିଟି ଠିକ୍ ଜାଗାରେ ଦେଇଗଲା- ତେଣୁ ଠିକଣାରେ ଲେଖା ହୋଇଥିବା ନାଁଟି ମଧ୍ୟ ଠିକ୍ ଥିଲା - କିନ୍ତୁ ସେହି ଚିଠିରେ ଯେଉଁ ''ସନ୍ଦେଶ'' ଦିଆଯାଇଥିଲା ଓ ତାହା ଯାହାକୁ ଚିଠି ଦିଆଯାଇଥିଲା ସେ ଲୋକଟି ଗ୍ରହଣ କଲା କି ନାହିଁ ଜାଣିବା କଷ୍ଟକର - ଏଇଥିରୁ ସ୍ୱତନ୍ତ୍ର 'ବିଷୟ ଶୃଙ୍ଖଳା'ର ସୃଷ୍ଟି - ଯୋଗାଯୋଗ । ସନ୍ଦେଶ ପଠାଉଥିବା ଲୋକ ଓ ତାକୁ ଗ୍ରହଣ କରୁଥିବା ଲୋକ ଭିତରେ ହିଁ ଏହି ''ଯୋଗଯୋଗ''ର ଆବଶ୍ୟକତା ରହିଛି । ଏହା ମୁଖ୍ୟତଃ ''ପଢ଼ିବା ଅଭ୍ୟାସ'' ଉପରେ ହିଁ ନିର୍ଭର କରିଥାଏ । ସେହି ଏକା ''ସନ୍ଦେଶ'', ''ପ୍ରେରକ'' ଓ ''ପ୍ରାପକ'' ଭିତରେ ଭିନ୍ନ ଏପରିକି ବିପରୀତ ଅର୍ଥ ସଂପ୍ରସାରଣ କରିପାରେ । ଯେଉଁମାନେ ବିଭିନ୍ନ ବୃତ୍ତି ଅବଲମ୍ବନ କରନ୍ତି, ସେମାନଙ୍କର ସାଂକେତିକ ଭାଷା ପଢ଼ି ବୁଝିପାରିବା ଓ ତା'କୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ଭାଷାର ଉପଯୋଗ କରାଯାଇଥାଏ, ସେ ଭାଷାକୁ ଖାଲି ''ପଢ଼ିବା ଅଭ୍ୟାସ'' ଜରିଆରେ ପଢ଼ାଯାଇପାରେ କିନ୍ତୁ ତାହା ଗ୍ରହଣ କରୁଥିବା ଲୋକ ନିକଟରେ ଅର୍ଥହୀନ ହୋଇପଡ଼େ । ତେଣୁ ଭାବର ଗଢ଼ଣ ତାର ପ୍ରକାଶ ଭଙ୍ଗୀ ଓ ତାର 'ଗ୍ରାହିକା ଶକ୍ତି' ପୁଣି ''ଉପଯୋଗୀତା'' — ଏସବୁ ସହ ''ପଢ଼ିବା ଅଭ୍ୟାସ''କୁ ଶୃଙ୍ଖଳିତ କରିବାକୁ ପଡ଼ିଥାଏ । ତେଣୁ ପ୍ରାଥମିକ, ମାଧ୍ୟମିକ, ଉଚ୍ଚମାଧ୍ୟମିକ, ସ୍ନାତକ, ସ୍ନାତକୋତ୍ତର ଆଦି ବିଭିନ୍ନ ପର୍ଯ୍ୟାୟରେ ଏହି ''ପଢ଼ିବା ଅଭ୍ୟାସ''କୁ କିପରି ପରିଚାଳିତ କରିବାକୁ ପଡ଼ିବ ତାହାର ମଧ୍ୟ ବିଚାର ବିଶ୍ଳେଷଣ ଆବଶ୍ୟକ । ପୁଣି ପ୍ରେମ ଆଦି ବ୍ୟାପାରରେ (ଯାହା ସାହିତ୍ୟରେ ରୂପ ପରିଗ୍ରହ କରେ) ପୁଣି 'ଚାହାଣୀ'କୁ ପଢ଼ିବା ବା ଧର୍ମପ୍ରଚାର କ୍ଷେତ୍ରରେ 'ମାନସିକ ଅବସ୍ଥା'କୁ ପଢ଼ି ପାରିବା ମଧ୍ୟ ଗଭୀର ବିଷୟ । ତେଣୁ ସ୍ଥାନ, କାଳ, ପାତ୍ର ଭେଦରେ ବିଭିନ୍ନ ପ୍ରକାରର ''ପଢ଼ିବା ଅଭ୍ୟାସ''ର ବିଭିନ୍ନ ''ଉପଯୋଗୀତା'' ରହିଛି । ଏ ଦିଗରେ ''ସ୍ଥାନୀୟ ଜ୍ଞାନ ସମ୍ପଦ''କୁ ବିନିଯୋଗ କରିବାର ମଧ୍ୟ ଆବଶ୍ୟକତା ରହିଛି । କାରଣ ଯେଉଁ 'ଶବ୍ଦ'କୁ ନେଇ ଏହା ତିଆରି ହୋଇଥାଏ, ସେ ''ଶବ୍ଦ''କୁ ବି ପୁଣି ଦାର୍ଶନିକ ଭାଷାରେ କୁହାଯାଇଥାଏ ''ଶବ୍ଦବ୍ରହ୍ମ'' - ଏହାକୁ ପଢ଼ି ଶିଖିଥିଲେ, 'ପଢ଼ିବା ଅଭ୍ୟାସ' କରିଥିଲେ,

କେଉଁଠାରେ କି ପ୍ରକାର ''ପାଠ୍ୟକ୍ରମ'' ପ୍ରସ୍ତୁତ କରିବାକୁ ହେବ ତାହା ସ୍ଥିର କରିବାକୁ ପଡ଼ିଥାଏ । ତେଣୁ ଏହି ''ପାଠ୍ୟକ୍ରମ''ର ଖସଡ଼ା ପ୍ରସ୍ତୁତ କଲାବେଳେ ବିଶେଷଜ୍ଞମାନେ ବା ବିଶାରଦମାନେ, କିପରି କଲେ ତାହା ଗ୍ରହଣୀୟ ହେବ, ତା ଉପରେ ମଧ୍ୟ ''ପଢ଼ିବା ଅଭ୍ୟାସ'' ନିର୍ଭର କରେ । ମନେ କରନ୍ତୁ ପ୍ରାଥମିକ ସ୍ତରରେ ଆପଣ ''ଗଣିତ'' ବା ''ଭୂତତ୍ତ୍ୱ'' ନେଇ ଏକ ପାଠ୍ୟକ୍ରମର ଖସଡ଼ା ତିଆରି କରୁଛନ୍ତି - ସେହି ପାଠ୍ୟକ୍ରମରେ ଯେଉଁ ଦୃଷ୍ଟାନ୍ତଗୁଡ଼ିକର ବ୍ୟବହାର କରୁଛନ୍ତି, ତାହା କନ୍ଧ, ସାନ୍ତାଳୀ ବା ପହରିଆ ପିଲାଟିଏ ପାଇଁ ଯାହା ଉପଯୋଗୀ, ବାଲେଶ୍ୱର ବା ଭୁବନେଶ୍ୱର ପିଲା ପାଇଁ ତାହା ଉପଯୋଗୀ ହୋଇ ନପାରେ ସେଥିପାଇଁ ଅନେକ ''ଥଟ୍ଟା ପରିହାସ'' ର ଭାଷାରେ ଏହା ବୁଝାଇବାକୁ ପଡ଼ିଥାଏ — ଯେପରି ''ଗୁଡ଼ କାଢ଼ ମୁଁ ଚୁଡ଼ା ଖାଇବି'' (ବୁଝାଇ ଦେବାକୁ ପଡ଼ିବ) ତୁ ତ ଚୁଡ଼ା ଖାଇବୁ ମୁଁ କାହିଁକି ଗୁଡ଼ କାଢ଼ିବି ? ଏଠାରେ ବାଲେଶ୍ୱରୀ କଥିତ ଭାଷାରେ ଗୁଡ଼ = ଗୋଡ଼ । ତେଣୁ ''ପଢ଼ିବା ଅଭ୍ୟାସ'' ର ଅର୍ଥାତ୍ ''ପଢ଼ିବା'' ଓ ତାର ''ଅଭ୍ୟାସ'' ଏହି ଦୁଇଟି ଶବ୍ଦର ଗଭୀର ଅର୍ଥ ରହିଛି ଓ ଏହି ଗଭୀରତାର ଅର୍ଥ ବୁଝି ବୁଝାଇ ପାରିଲେ ହିଁ ''ପଢ଼ିବା ଅଭ୍ୟାସ''କୁ ସାଧାରଣ ଅର୍ଥର ପରିସରର ଉର୍ଦ୍ଧ୍ୱକୁ ନେଇ ଏକ ''ତାତ୍ତ୍ୱିକତା'' ଓ ଏକ ପ୍ରତ୍ୟୟ (Concept) ଭାବରେ ବିଚାର କରାଯାଇ ପାରିବ । ଏଥିପାଇଁ ମନୋବିଜ୍ଞାନ ବିଶ୍ଳେଷକ, ଭାଷା ବିଜ୍ଞାନୀ, ଶିକ୍ଷାବିତ୍ ଓ ପାଠକ ପାଇଁ — ଲେଖକଙ୍କ ମଧ୍ୟରେ, ଏହି ''ପଢ଼ିବା ଅଭ୍ୟାସ''କୁ କିପରି ରୂପାୟିତ କରିବାକୁ ପଡ଼ିବ ଓ ସେଥିପାଇଁ କି କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ପଡ଼ିବ - ପୁଣି ''ପାଠ'' (Text)ର ଲିଖିତ/ଅଲିଖିତ ରୂପ ଉଚ୍ଚାରଣ ଆଦି ସହିତ ଏହା ଗ୍ରହଣୀୟ ହୋଇ ପାରିବ କି ନାହିଁ - ତା'ର ''ପରୀକ୍ଷା କରିବାକୁ ପଡ଼ିବ'' । ମନେ ରଖିବାକୁ ପଡ଼ିବ ଯେ ପ୍ରତ୍ୟେକ ଛାତ୍ରଛାତ୍ରୀର ''ମାନସିକତାର ମାନଚିତ୍ର'' ଏକ କଷଟି ପଥର । ଏଥିରେ କିପରି ''ଦାଗ'' ସୃଷ୍ଟି କଲେ ତାହା ''ପଢ଼ିବା ଅଭ୍ୟାସ''କୁ ଏକ ଧାରାରେ ପକାଇ ପାରିବ, ସେ ସଂପର୍କରେ ଏକ ''ଅଭିଚର୍ଚ୍ଚା''ର ମାର୍ଗ ସୃଷ୍ଟି ହୋଇପାରିବ - ଏଠାରେ ''ଅଭିଚର୍ଚ୍ଚା'' ''ଶବ୍ଦଟିକୁ ତାତ୍ତ୍ୱିକ ବିଚାରରେ ''ଶାସ୍ତ୍ରୀୟ ବିଶ୍ଳେଷଣ'' ବା ଇଂରାଜୀରେ Discourse ଅର୍ଥରେ ବ୍ୟବହାର କରୁଛି - ବୋଧହୁଏ ''ପଢ଼ିବା ଅଭ୍ୟାସ'' ସଂପର୍କରେ ଏପରି ଏକ ଆଲୋଚନା ଚକ୍ର ଓଡ଼ିଶାରେ ପୂର୍ବରୁ ହୋଇଛି କି ନାହିଁ କହି ପାରିବିନି । ଏ ''ଚର୍ଚ୍ଚା'' ନୂତନ ଚିନ୍ତନ ଓ ପ୍ରଜ୍ଞାନର ପ୍ରଭାବ ଫଳରେ ଯେଉଁ ନୂତନ ବାତାବରଣ ସୃଷ୍ଟି କରିଛି, ତାକୁ ବିଚାରକୁ ନେଇ, ଏଭଳି ଆଲୋଚନା ଚକ୍ରମାନ ଅଧିକରୁ ଅଧିକ ହେଲେ ଅଭିଚର୍ଚ୍ଚା କ୍ଷେତ୍ରରେ ନୂତନ ଚିନ୍ତନର ଉଦ୍‌ଭବ ହୋଇପାରେ ।



# ପିତୃ-ପ୍ରଧାନବାଦ (Paternalism)

ଯେଉଁ ସମାଜରେ ପୁରୁଷମାନେ ସର୍ବମୟ କର୍ତ୍ତା ତାହାକୁ ପିତୃ ପ୍ରଧାନ ସମାଜ ବ୍ୟବସ୍ଥା କୁହାଯାଇଥାଏ । ପରିବାରର ସମସ୍ତ ସଭ୍ୟ ପିତାର ସମସ୍ତ ନିଷ୍ପତ୍ତିକୁ ମାନି ନେଇଥାନ୍ତି । ଏହି ପ୍ରତ୍ୟୟର ଏକ ବ୍ୟାପକ ଅର୍ଥ ଅଛି ଓ ଏହାର ବ୍ୟବହାର ମଧ୍ୟ ଅନେକ କ୍ଷେତ୍ରରେ ପରିଲକ୍ଷିତ ହୁଏ । ନାରୀବାଦ ଓ ଯୌନତା ସଂପର୍କୀୟ ଆଲୋଚନାରେ ମଧ୍ୟ ଏହି ପ୍ରତ୍ୟୟ ବ୍ୟବହୃତ ହୋଇଥାଏ । ଏହା ନାରୀମାନଙ୍କ ପ୍ରତି ପୁରୁଷ ସମାଜର ମନୋଭାବ ମଧ୍ୟ ବ୍ୟକ୍ତ କରିଥାଏ । ବନ୍ଧୁବାନ୍ଧବ ସଂପର୍କ, ପାରିବାରିକ ବିଧି ବ୍ୟବସ୍ଥା, ନିଯୁକ୍ତି କ୍ଷେତ୍ରରେ ଅସମତା, ଏପରିକି ସେମାନଙ୍କର ମଜୁରୀ, ଦରମା, ସ୍ୱାସ୍ଥ୍ୟ ଓ ପିଲାମାନଙ୍କର ରକ୍ଷଣାବେକ୍ଷଣ କ୍ଷେତ୍ରରେ ମଧ୍ୟ ଏହି ପ୍ରତ୍ୟୟର ଉପଯୋଗ କରାଯାଇଥାଏ । ଏହାକୁ ସାହିତ୍ୟିକ, କଳା, ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ବିଚାରକୁ ନିଆଯାଇଥାଏ ।

ପଶ୍ଚିମ ଭୂଖଣ୍ଡରେ ଅନେକ ଗ୍ରନ୍ଥ ଏ ବିଷୟରେ ସବିଶେଷ ଆଲୋଚନା କରିଛନ୍ତି । ଇଂରେଜ ସାହିତ୍ୟରେ ଭର୍ଜିନିୟା ଉଲ୍ଫ ୧୯୨୯ ମସିହାରେ ଏହି ପିତୃ-ପ୍ରଧାନ ସମାଜ ବ୍ୟବସ୍ଥା ସଂପର୍କରେ ସ୍ୱର ଉତ୍ତୋଳନ କରିଥିଲେ । ଏହା ତାଙ୍କର ସାହିତ୍ୟିକ କୃତିରେ ୧୯୭୩ ମସିହାରେ ପ୍ରକାଶ ପାଇଲା । ଏହା ଆଙ୍ଗ୍ଲୋ ଆମେରିକାନ୍ ସାହିତ୍ୟରେ 'ବିପ୍ଳବୀ-ନାରୀବାଦୀ' ମାନଙ୍କ ଆନ୍ଦୋଳନକୁ ତୀବ୍ରତର କରିବାକୁ ଉପାଦାନ ଯୋଗାଇଲା । ଏ ସଂପର୍କ ଆଲୋଚନାର ଧାରାକୁ ବଳିଷ୍ଠ କଲେ - Kate Millett, Shulamith, Firestone, Eva Fige & Germaine Greer । ଏହାପରେ ସାହିତ୍ୟ ଆଲୋଚକମାନେ ସାହିତ୍ୟ-ସମାଲୋଚନା, ଦର୍ଶନ ଶାସ୍ତ୍ର, ମନୋବିଜ୍ଞାନ, ଔଷଧ, ଖ୍ରୀଷ୍ଟିଆନିଟି, ଭାଷା, ଚାରୁକଳା, ପାରିବାରିକ ସଂପର୍କ, ଯୌନ ଚର୍ଚ୍ଚା କ୍ଷେତ୍ରରେ ଏହି 'ପ୍ରତ୍ୟୟ'ର ଆଲୋଚନା କରିଥିଲେ ମଧ୍ୟ ଏହି 'ପିତୃପ୍ରଧାନ ସମାଜ ବ୍ୟବସ୍ଥା' ଏବର ପ୍ରଶାସନରେ (ସବୁ ଦେଶରେ ଓ ଶିଳ୍ପ ବିପ୍ଳବ ପୂର୍ବରୁ) କିପରି ପରିବର୍ତ୍ତିତ କରାଯାଇ ପାରିବ ସେ ସଂପର୍କରେ କୌଣସି ଦିଗ୍‌ଦର୍ଶନ ଦେଇପାରିନାହିଁ । ଫଳରେ 'ଅନୁକରଣ ସର୍ବସ୍ୱ' ଭାରତ ବା ଓଡ଼ିଶାର ସାମାଜିକ ବ୍ୟବସ୍ଥାରେ କେବଳ 'ଅଧିକାର' ସାବ୍ୟସ୍ତ କରିବା ଆରମ୍ଭ ହୋଇଥିବାରୁ ଓ ସେଥିପାଇଁ ରାଜନୀତିକ କ୍ଷେତ୍ରରେ 'ସ୍ଥାନ ସଂରକ୍ଷଣ' ନିମିତ୍ତ ଏହା କେତେକ ପରିମାଣରେ ଆହ୍ୱାନ ସୃଷ୍ଟି କରିଥିଲେ ମଧ୍ୟ ଓ ଆଇନ ପ୍ରଣୟନ କ୍ଷେତ୍ରରେ ରାଶି

ରାଶି ଆଇନ ପ୍ରଣୀତ ହୋଇଥିଲେ ମଧ୍ୟ ସମାଜର ଅର୍ଥନୈତିକ ଦିଗରୁ ନିମ୍ନସ୍ତରରେ ଥିବା ନାରୀମାନଙ୍କ କ୍ଷେତ୍ରରେ ଏହା ସେପରି ଆଶାର ସଞ୍ଚାର କରିପାରିନାହିଁ । ତେଣୁ ସାହିତ୍ୟିକ କୃତିରେ ଏହାର କିଛି କିଛି ଉଦାହରଣ ଥିଲେ ମଧ୍ୟ (ଯେପରି 'ରେବତୀ') ତାତ୍ତ୍ୱିକତା ଦୃଷ୍ଟିରୁ ଏହା ସାହିତ୍ୟ-ସମୀକ୍ଷକ ବା ନାରୀବାଦୀ ଲେଖିକାଙ୍କ ମଧ୍ୟରେ ସେଭଳି ପ୍ରେରଣା ଯୋଗାଇ ପାରିନାହିଁ । ପଶ୍ଚିମ ଭୂଖଣ୍ଡରେ ନାରୀବାଦୀ, ମାର୍କ୍ସବାଦୀ ଓ ମନୋବିଜ୍ଞାନୀଙ୍କ ମଧ୍ୟରେ ଏହି 'ତାତ୍ତ୍ୱିକତା' ଭିତ୍ତିରେ ତର୍କ-ବିତର୍କ ଆରମ୍ଭ ହୋଇଛି ମାତ୍ର । ତେଣୁ 'ନାରୀ ସମସ୍ୟା'ର ସାର୍ବଜନୀନତା ଏବେ ବି ବିତର୍କର ବାହାରେ ନିଜର ସ୍ଥିତି ଦୃଢ଼ କରିପାରି ନାହିଁ । ଭାରତରେ ଏହା ଦେବୀ/ଦାନବୀ ଭାବରେ ଏକ ସାର୍ବଜନୀନତା ରଖି ଆସିଥିଲେ ବି ଏହା ଏକ ଉଚ୍ଚ ଆଦର୍ଶ । ସମାଜରେ ଯେଉଁ ପାହାଚଗୁଡ଼ିକ ତିଆରି ସରିଛି - ସେଠାରେ ଏହି 'ତତ୍ତ୍ୱ'କୁ କିପରି ପ୍ରବେଶ କରାଇ ହେବ ଏ ପ୍ରଶ୍ନ ଏବେ ବି ଅମୀମାଂସିତ । ଜଗତୀକରଣ ପ୍ରକ୍ରିୟାରେ ଗଣଯୋଗାଯୋଗ କ୍ଷେତ୍ରରେ ଯେଉଁ ପ୍ରସାର ଘଟିଛି, ସେଥିରେ 'ନାରୀବାଦ' ଅନେକ ପରିମାଣରେ ପ୍ରୋତ୍ସାହନ ପାଇପାରେ । ଏହା କେବଳ 'ପୁରୁଷ' ପ୍ରାଧାନ୍ୟକୁ ଆଙ୍ଗୁଳି ନିର୍ଦ୍ଦେଶ କରୁଛି । ଗଣ ଯୋଗାଯୋଗର ବିକାଶ ଫଳରେ ନାରୀବାଦୀ ଗୋଷ୍ଠୀମାନଙ୍କ ମଧ୍ୟରେ ସକ୍ରିୟ 'ସଚେତନର ଉତ୍ତରଣ' ଦିଗରେ ଏହା ସାହାଯ୍ୟ କରିବା ଆରମ୍ଭ କରିଛି ମାତ୍ର ।

କିନ୍ତୁ ମନେ ହେଉଛି ଏହା ତାତ୍ତ୍ୱିକ ବିଶ୍ଳେଷଣ କ୍ଷେତ୍ରରେ ଖୁବ୍ ବେଶୀ ଆଗ୍ରହ ସୃଷ୍ଟି ନ କରି, 'କେବଳ ନାରୀବାଦୀ ଗୋଷ୍ଠୀ'ଙ୍କୁ ସଂଗଠିତ କରିବାକୁ ଚେଷ୍ଟାକଲା । ଫଳରେ 'ପୁରୁଷମାନେ' ନାରୀମାନଙ୍କର ଶତ୍ରୁ — ଏଧାରଣା ଅଧିକ ବଳଶାଳୀ ହେଲା । କିନ୍ତୁ ଭାରତବର୍ଷ ଭଳି, ପଶ୍ଚିମ ଭୂଖଣ୍ଡରେ ମଧ୍ୟ 'ପୁଞ୍ଜିବାଦୀ'ର ଆଦର୍ଶବାଦ କ୍ଷେତ୍ରରେ କେବଳ ସ୍ଥିତି ସଂପନ୍ନ ମହିଳାଙ୍କ ଦ୍ୱାରା ଏହା ଗୃହୀତ ହେଲା । କିନ୍ତୁ 'ସଂସ୍କୃତି ଭିତ୍ତିକ' ଶ୍ରେଣୀ ବିଭାଜନର ସମସ୍ୟା ପ୍ରତି ଏହା ଅଧିକ ଧ୍ୟାନ ଦେଇପାରି ନାହିଁ । ଅନ୍ୟ ଭାଷାରେ କହିଲେ 'ମାର୍କ୍ସୀୟ ଦର୍ଶନର ଅନୁରକ୍ତ' ଲେଖିକାମାନେ ସମାଜର ତଳସ୍ତରର ନାରୀମାନଙ୍କ କ୍ଷେତ୍ରରେ ଏହାର କିପରି ସଦୁପଯୋଗ କରାଯାଇପାରିବ - ସେ ସଂପର୍କରେ କୌଣସି ତାତ୍ତ୍ୱିକ ଦିଗ୍‌ଦର୍ଶନ ଯୋଗାଇ ପାରିଲେ ନାହିଁ । ବରଂ ଏହା ବ୍ୟକ୍ତିଗତ ଅଭୀପ୍ସା ଓ ରାଜନୈତିକ କ୍ଷେତ୍ରରେ ନିଜର ଅବଦମିତ ଇଚ୍ଛା ପୂରଣ କରିବା ଦିଗରେ ଏକ 'ସ୍ଲୋଗାନ'ରେ ପରିଣତ ହୋଇଛି । ମନେ ହେଉଛି ଏହା ସମଗ୍ର ବିଶ୍ୱର ନାରୀମାନଙ୍କର ଏକ 'ପରିଚିତି' (ଅସ୍ମିତା) ସୃଷ୍ଟି କରିବା କ୍ଷେତ୍ରରେ କିଛି ମାତ୍ରାରେ ସଫଳ ହୋଇଥିଲେ ମଧ୍ୟ ବିଭିନ୍ନ ରାଷ୍ଟ୍ରୀୟତା, ପ୍ରଜାତିଗତ ଅସାମ୍ୟ,

ଗୋଷ୍ଠୀକୈନ୍ଦ୍ରିକ ଓ ଜାତି ଭିତ୍ତିକ ସମାଜ ବ୍ୟବସ୍ଥାରେ 'ଭାଇ ବିରାଦରୀ' ସଂପର୍କ ଓ ବିଭିନ୍ନ ସାଂସ୍କୃତିକ ବିଭେଦ ସଂପର୍କରେ ଏହି ପରିଚିତି ବିଶେଷ ସହାୟକ ହୋଇପାରି ନାହିଁ । କିନ୍ତୁ ସମାଜ ଜୀବନର ଅର୍ଥନୈତିକ ଅସମତା, ସଂସ୍କୃତି ଭିତ୍ତିକ ବିଭିନ୍ନତା (ଭାଷା, ଗୋଷ୍ଠୀ, ମୌଖିକ/ଲିଖିତ ସାହିତ୍ୟ, ଚଳଣୀ, ପରମ୍ପରା, ବେଶଭୂଷା ଆଦି) ଦୃଷ୍ଟିରୁ ଓଡ଼ିଶାର ଲେଖିକାମାନେ, ବିଶେଷ ଭାବରେ 'ନାରୀବାଦୀ' ଲେଖିକା/ଲେଖକମାନେ ଓ ସାହିତ୍ୟ/ସଂସ୍କୃତି ସମୀକ୍ଷକମାନେ ଏ ଦିଗରେ 'ଚିନ୍ତା' କରି ସେମାନଙ୍କ 'ତାତ୍ତ୍ୱିକ' ବିଚାରଣାକୁ ବଳିଷ୍ଠ କରିପାରନ୍ତି । ଏ ଦିଗରେ ଅନ୍ତତଃ ଓଡ଼ିଶାର ବିଶ୍ୱବିଦ୍ୟାଳୟର 'ନାରୀ ଅଧ୍ୟୟନ କେନ୍ଦ୍ର', ଗୃହ ବିଜ୍ଞାନ ଓ ମହିଳା ବିଦ୍ୟାଳୟରେ ଅବସ୍ଥାପିତ ପୁରୁଷ ଓ ନାରୀମାନେ ଦିଗ୍‌ଦର୍ଶକ ହୋଇପାରିବେ । ସେମାନଙ୍କୁ ପ୍ରୋତ୍ସାହନ ଯୋଗାଇବା 'ସମାଜପତି' ମାନଙ୍କର କେବଳ କର୍ତ୍ତବ୍ୟ ନୁହେଁ, ଦାୟିତ୍ୱ ମଧ୍ୟ । କାରଣ ଏହା 'ପାରମ୍ପରିକ' ବ୍ୟବସ୍ଥାକୁ ପରିବର୍ତ୍ତିତ କରିବା ସମ୍ଭବ ଓ 'ବିକଳ୍ପ' ଭାବରେ ସୂଚନା ପରିବାର ବ୍ୟବସ୍ଥା ସୃଷ୍ଟି ନହେବା ପର୍ଯ୍ୟନ୍ତ, ବିଭିନ୍ନ କ୍ଷେତ୍ରରେ କେବଳ ସଂଶୋଧନ (amendment) କରିବା ଛଡ଼ା, ଅନ୍ୟ କୌଣସି 'ଚିନ୍ତନ' ପରିଲକ୍ଷିତ ହେଉନାହିଁ । ଉଦାହରଣ : ପଶ୍ଚିମ ଭୂଖଣ୍ଡରେ ଏବେ "maternity leave", 'ମାତୃତ୍ୱ ଛୁଟି' ସହିତ "Paternity Leave" ବା 'ପିତୃତ୍ୱ ଛୁଟି' ପାଇଁ ଦାବି ହୋଇ ଆସୁଛି ଓ କେତେକ କ୍ଷେତ୍ରରେ ଏହା ଗୃହୀତ ହେଲାଣି । ଶେଷରେ ଗାନ୍ଧିଜୀଙ୍କର ଏକ 'ଉକ୍ତି'ରେ ଏହି ଆଲୋଚନାର ଉପସଂହାର କରୁଛି । *ସଂପୃକ୍ତ ଉକ୍ତିଟି ହେଉଛି :*

> *''ବଳର ଅର୍ଥ ଯଦି ପଶୁବଳ' ବୋଲି ବୁଝାଯାଏ ତେବେ ବାସ୍ତବିକ ପୁରୁଷ ଅପେକ୍ଷା ନାରୀ କମ୍ ପଶୁ । ଯଦି ବଳର ଅର୍ଥ ନୈତିକ ବଳ ହୁଏ, ତାହାହେଲେ ନାରୀ ପୁରୁଷଠାରୁ ଅମାପ ଗୁଣରେ ଅଧିକ ବଳବତୀ । ନାରୀର ସହଜ ଜ୍ଞାନ (Intution) ଅଧିକ ନୁହେଁ କି ? ସେ କ'ଣ ଅଧିକ ଆତ୍ମତ୍ୟାଗୀ ନୁହେଁ ? ତାର ସହିବା ଶକ୍ତି କ'ଣ ପୁରୁଷଠାରୁ ଅଧିକ ନାହିଁ ? ସେ ନଥିଲେ ପୁରୁଷ ନଥାନ୍ତା । ଅହିଂସାକୁ ଯଦି ଆମ୍ଭମାନଙ୍କର ସତ୍ତାର ନିୟମ ବୋଲି ଆମେ ସ୍ୱୀକାର କରୁ ତାହାହେଲେ ଭବିଷ୍ୟତଟି ନାରୀମାନଙ୍କ ହାତରେ ରହିଛି ବୋଲି କହିବାକୁ ହେବ । ନାରୀ ବ୍ୟତୀତ ଅନ୍ୟ କିଏ ହୃଦୟକୁ ଏତେ ସଫଳ ଭାବରେ ସ୍ପର୍ଶ କରିପାରିବ ?'*



# ପ୍ରତିବିମ୍ବବାଦ (Reflectionism)

ଏହି 'ପ୍ରତ୍ୟୟ'ଟି, 'କଳାକାରର ସମାଜ ସହିତ ସଂପର୍କ' ଆଲୋଚନା ହେଉଥିବା ନାନ୍ଦନିକତା ଓ ତାହାର ଅଭିଚର୍ଚ୍ଚା କ୍ଷେତ୍ରରେ ହିଁ ବ୍ୟବହୃତ ହୋଇଥାଏ । ସେଥିପାଇଁ କଳାକୁ 'ପ୍ରକୃତି'ର ପ୍ରତିଛବି କୁହାଯାଇଥାଏ । ଗ୍ରୀକ୍ ସାହିତ୍ୟରେ ଏହା mimesisର ତାତ୍ତ୍ୱିକତା ସହିତ ସଂପୃକ୍ତ । ଏହି ଗ୍ରୀକ୍ ଶବ୍ଦର ଅର୍ଥ ହେଉଛି ଅନୁକରଣୀୟତା । ପ୍ଲାଟୋଙ୍କ ପରେ ଆରିଷ୍ଟଟଲ ଏହାକୁ ତାଙ୍କର "Poetics" ଗ୍ରନ୍ଥରେ ବ୍ୟବହାର କରିଥିଲେ । ଏହି ପ୍ରତ୍ୟୟଟି 'ବାସ୍ତବବାଦ' ପରିପ୍ରେକ୍ଷୀରେ ସକଳ ପ୍ରକାର 'ସର୍ଜ୍ଜନାତ୍ମକ କଳା'ରେ ବ୍ୟବହୃତ ହୋଇଥାଏ । ଏବେ 'ନବନ୍ୟାସ' (fiction) କ୍ଷେତ୍ରରେ ଏହା ବହୁଳ ଭାବରେ ବ୍ୟବହୃତ ହୋଇ ସାହିତ୍ୟ ସମାଲୋଚନାକୁ ପ୍ରଭାବିତ କରି ଆସିଛି । ଏହା ପର୍ଯ୍ୟାୟକ୍ରମେ ଫଟୋଗ୍ରାଫି, ଚଳଚିତ୍ର, ସାମ୍ବାଦିକତା, ଦୂରଦର୍ଶନର ସମ୍ବାଦ ପରିବେଷଣ କ୍ଷେତ୍ରରେ ମଧ୍ୟ ତା'ର କାୟା ବିସ୍ତାର କରିଆସିଛି । ତେଣୁ 'କଳା' ବା 'ସଂସ୍କୃତି'ର ତାତ୍ତ୍ୱିକତା କ୍ଷେତ୍ରରେ ଏହି 'ପ୍ରତିବିମ୍ବବାଦ'ର 'ବାସ୍ତବତା'କୁ 'ବିଶ୍ୱପ୍ରତି ଗବାକ୍ଷ' ଭାବରେ ଗ୍ରହଣ କରି ଆସିଛି । ତେଣୁ କଳାତ୍ମକ ବା ସାଂସ୍କୃତିକ 'ପାଠ' (Text)ରେ ଏହା ପ୍ରତିଧ୍ୱନିତ ହୋଇଛି । ମାର୍କ୍ସିଷ୍ଟ ଦର୍ଶନର ପ୍ରାକ୍-କାଳରେ ଏହା ମଧ୍ୟ 'ଅର୍ଥନୀତି ଓ ସଂସ୍କୃତି' ଓ 'ସଂସ୍କୃତି ସହିତ ସମାଜ'ର ବୌଦ୍ଧିକ ସ୍ତରରେ ଥିବା ସଂପର୍କକୁ ସୂଚିତ କରିଥାଏ । କିନ୍ତୁ ଏହା 'ବସ୍ତୁତାନ୍ତ୍ରିକ ଦ୍ୱୈତବାଦ' ସ୍ୱୀକାର କରେ ନାହିଁ । ଏହା 'ବୌଦ୍ଧିକ ସ୍ତରର' 'ଜ୍ଞାନ ଜଗତ' ଠାରୁ ଊର୍ଦ୍ଧ୍ୱରେ ଥିବା ଚିନ୍ତନକୁ ପ୍ରତିବିମ୍ବିତ କରିପାରେ ନାହିଁ । ପ୍ରକୃତ 'ଭାବମୂର୍ତ୍ତି' (Image)ର ଏହା ପ୍ରତିବିମ୍ବ ନୁହେଁ । ବରଂ ଏହା କେବଳ 'ବାସ୍ତବ' ବା ଇନ୍ଦ୍ରିୟ ଗ୍ରାହ୍ୟ 'ବସ୍ତୁ'ର ପ୍ରତିଛବି ମାତ୍ର । ତେଣୁ କଳା/ସାହିତ୍ୟ ସମାଲୋଚନା କ୍ଷେତ୍ରରେ 'ପ୍ରତିବିମ୍ବବାଦୀ' ଆଉ ବିଶେଷ ଭାବରେ ନିଜର ପରିଚିତି ସୃଷ୍ଟି କରିପାରୁ ନାହାନ୍ତି । କାରଣ କେଉଁ 'ଛବି'ର ଏହା 'ପ୍ରତିଛବି' ତାହା ବିଶ୍ଳେଷଣ କରିବା ଆଲୋଚକ ପକ୍ଷରେ ସହଜ ସାଧ୍ୟ ନୁହେଁ । ତେଣୁ କୌଣସି 'ସର୍ଜ୍ଜନାତ୍ମକ କଳା'କୁ ପ୍ରତିବିମ୍ବବାଦୀ କହିବା ଏକ ସାଧାରଣ ମନ୍ତବ୍ୟ ହୋଇପାରେ - କିନ୍ତୁ 'ତାତ୍ତ୍ୱିକତା କ୍ଷେତ୍ରରେ' ଏହି ପ୍ରତ୍ୟୟ ଆଲୋଚକକୁ ସାହାଯ୍ୟ କରିପାରେ ନାହିଁ । କାରଣ ଏହା କାହାର 'ପ୍ରତିବିମ୍ବ' ପ୍ରମାଣ କରିବା କଷ୍ଟକର । ଓଡ଼ିଆ ସାହିତ୍ୟର ସମାଲୋଚକମାନେ 'ସାହିତ୍ୟ ସମାଜର ଦର୍ପଣ' କହିବା ତାତ୍ତ୍ୱିକତା ଦୃଷ୍ଟିରୁ ପ୍ରମାଣ କରିବା କଷ୍ଟକର । କାରଣ ସର୍ଜ୍ଜନାତ୍ମକ ପ୍ରକ୍ରିୟାରେ କଳାକାର, କବି, ସଂଗୀତଜ୍ଞ କେଉଁ ବାସ୍ତବତାକୁ ରୂପ ଦେଇଥାନ୍ତି ତାହାକୁ 'ଯୁକ୍ତିନିଷ୍ଠ', 'ପ୍ରମାଣ-ଭିତ୍ତିକ' ଆଲୋଚନାରେ ଗଭୀର କରିବା ସମ୍ଭବ ନୁହେଁ । ଇନ୍ଦ୍ରିୟାତୀତ ପ୍ରେରଣାକୁ ଇନ୍ଦ୍ରିୟଗ୍ରାହ୍ୟ 'କଳା' କ୍ଷେତ୍ରରେ କିପରି ବା ଅନୁଶୀଳନ କରିହେବ ?



# ପ୍ରଶାସନିକତା (Governmentality)

ଆମର ଏକ ଆପ୍ତବାକ୍ୟ ରହି ଆସିଛି ଯେ 'ଲୋକଙ୍କ ଦ୍ୱାରା, ଲୋକଙ୍କ ପାଇଁ, ଲୋକଙ୍କର ଶାସନତାନ୍ତ୍ରିକ ବ୍ୟବସ୍ଥା ହିଁ ଗଣତନ୍ତ୍ର । ଆମ ସମାଜରେ ଲୋକ ଶବ୍ଦଟି ମଧ୍ୟ ବହୁ ଅର୍ଥରେ ବ୍ୟବହୃତ ହୋଇଥାଏ । ସମ୍ବିଧାନରେ ବର୍ଣ୍ଣିତ 'ପିପୁଲ୍' (People)କୁ ଯଦି ଲୋକ ବୋଲି ଧରି ନିଆଯାଏ, ତେବେ 'ମାସ୍' (mass) ଅର୍ଥରେ, 'ଗଣ' କହିଲେ ସାଧାରଣ ବା 'ଆମ୍ ଜନତା' । ଏମାନଙ୍କର ପ୍ରତିନିଧିମାନେ ହିଁ ଗଣତନ୍ତ୍ର ଶାସନର ନିୟାମକ । ରାଜ୍ୟସଭା ନିର୍ବାଚନରେ 'ଲୋକ'ମାନଙ୍କର ପ୍ରତିନିଧିମାନେ ହିଁ ପ୍ରାଧାନ୍ୟ ଲାଭ କରିଥାନ୍ତି ଓ ସାଧାରଣ ବା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଗଣ ବା ଆମ୍ ଜନତା ଭାଗ ନିଅନ୍ତି । ପୁଣି ଏମାନଙ୍କ ମଧ୍ୟରେ ବିଭିନ୍ନ ଜାତି, ଗୋଷ୍ଠୀ, ବୟସ ଓ ଲିଙ୍ଗ ଭେଦରେ ଏହି 'ଗଣ' ଓ 'ଲୋକ'ମାନେ ଚିହ୍ନିତ ହୋଇଥାନ୍ତି ।

ଆମ ସମ୍ବିଧାନ ପ୍ରଣୀତ ବ୍ୟବସ୍ଥା ଅନୁଯାୟୀ (ଯାହାକି ଅନେକାଂଶରେ ପାଶ୍ଚାତ୍ୟ ଜଗତର ବ୍ୟବସ୍ଥାରୁ ଆନୀତ) ଯେଉଁମାନେ ସରକାର ଗଠନ କରିଥାନ୍ତି, ସେମାନେ ଯେଉଁ ବ୍ୟବସ୍ଥା ଜରିଆରେ ନିଷ୍ପତ୍ତି ନିଅନ୍ତି - ସେହି କଳଟିକୁ 'ପ୍ରଶାସନ' କୁହାଯାଇଛି । ଏହା ଶାସନ ନୁହେଁ - କାରଣ ଏଠାରେ 'ପ୍ର' ଉପସର୍ଗଟି ଉତ୍ତମ ଅର୍ଥରେ ବ୍ୟବହୃତ । ଏହା ଅପଶାସନ ନୁହେଁ । ତେଣୁ ଏହି ଉତ୍ତମ ଶାସନ ବ୍ୟବସ୍ଥାକୁ ପାଠୁଆ ଲୋକେ 'ପ୍ରଶାସନ' କହନ୍ତି - ଏହା ଯେଉଁସବୁ ଜନହିତକାରୀ ଯୋଜନା ଜରିଆରେ ନିଜର ଉତ୍ତମତ୍ୱ ପ୍ରତିପାଦନ କରନ୍ତି, ତାହାକୁ 'ପ୍ରଶାସନିକ -ସଂସ୍କୃତି' କୁହାଯାଇଥାଏ ଓ ଏହା କିପରି ଚାଲିଛି, ତାହାର ବିଚାର ବିମର୍ଶକୁ 'ପ୍ରଶାସନିକତା' କୁହାଯାଇଛି । ଇଂରାଜୀରେ କହିଲେ Governmentality, ଯେପରି ନ୍ୟାସନାଲିଟି ବା ସେକୁଆଲିଟି । ଇଂରେଜୀରେ ଏହି 'ଲିଟି'କୁ ଆମ ଭାରତୀୟ ପରମ୍ପରାରେ 'ଇକତା' ବା 'ଇୟତା' ପ୍ରୟୋଗରେ ପ୍ରତ୍ୟୟଗତ ସଂକେତ ଭାବରେ ଗ୍ରହଣ କରାଯାଇଥାଏ - ଯେପରି ଅଧୁନା - ଆଧୁନିକତା, ବୁଦ୍ଧି ବୌଦ୍ଧିକତା, ଭାରତ-ଭାରତୀୟତା ଆଦି । ତେଣୁ ଭାରତରେ ଓ ଓଡ଼ିଶାରେ ବି 'ସାଂସ୍କୃତିକ ରାଷ୍ଟ୍ରୀୟତାବାଦ' କ୍ଷେତ୍ରରେ ଏହି ପ୍ରଶାସନିକତା କିପରି ଗତିଧାରା ସୃଷ୍ଟି କରିଛି, ବା କରିବାର ଉପକ୍ରମ ବା କରିବାର ସମ୍ଭାବନା ଅଛି, ତାକୁ ହିଁ ଲକ୍ଷ୍ୟ କରି ସମ୍ବିଧାନରେ ଅନେକ ବିଧିବ୍ୟବସ୍ଥାର ସଂଯୋଗ ଓ ବିଯୋଗ କରାଯାଇଛି । ଏହାକୁ 'ଲୋକେ' ହୁଏତ ବୁଝୁଥିବେ କିମ୍ବା ପ୍ରଶାସନିକ କର୍ମଚାରୀମାନେ ବେଶି ବୁଝୁଥିବେ - କିନ୍ତୁ ଗଣ ବା ଆମ୍ ଜନତା ଯାକୁ ଆଲୋଚନା

କଲାବେଳେ ତାଙ୍କର ବୁଦ୍ଧିର ପରିମାପ ଭିତରେ ଅନେକ ନିଷ୍କର୍ଷ ରଖିଯାନ୍ତି । ଉଦାହରଣ ସ୍ୱରୂପ- "ଚୋରୀ ବିଦ୍ୟା ଭଲ, ନେଇ ଆଣି ଥୋଇ ପାରିଲେ ହେଲା" । ଏହି 'ଥୋଇ ପାରିବାଟା' ପ୍ରଶାସନିକତାର ଅଙ୍ଗ ବିଶେଷ - ଏହାକୁ କୁହାଯାଉଛି ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ବା ଆକାଉଣ୍ଟିବିଲିଟି । ଏହି ଦୁଇଟି ଶବ୍ଦ ଏବେ ଗତ କେତେବର୍ଷ ଭିତରେ ବେଶ୍ ଗରମାଗରମ ଆଲୋଚନାର ସୂତ୍ରପାତ କରି ଆସିଛି । ଅର୍ଥାତ୍ ପ୍ରଶାସନିକତା 'ନେଇ ଆଣି ଥୋଇ ପାରିବାରେ' କେତେବେଳେ ଦକ୍ଷତା ପ୍ରତିପାଦନ କରିଛି ତ ଅନେକ ସମୟରେ ଅସହାୟତା ପ୍ରଦର୍ଶନ କରିଛି, ତାହା ଆଲୋଚନା କରିବା କଥା ।

ତେଣୁ ଏକବିଂଶ ଶତାବ୍ଦୀରେ 'ପ୍ରଶାସନିକତା' ସେହିଭଳି ଏକ ସାଂସ୍କୃତିକ ପ୍ରତ୍ୟୟ ଭାବରେ ଉଭା ହୋଇଛି ଓ ଏକ ସ୍ୱତନ୍ତ୍ର ପରିଭାଷା ଭାବରେ ବିଭିନ୍ନ ରାଷ୍ଟ୍ରରେ କିଭଳି ଆଗେଇଛି, ତାର ପରିସଂଖ୍ୟାନଗତ ବା ମୂଲ୍ୟବୋଧଗତ ସିଦ୍ଧାନ୍ତ ସବୁ ପ୍ରାୟ ପ୍ରକାଶ ପାଉଛି । ଏ ସଂପର୍କରେ ମଧ୍ୟ 'ସଂସ୍କୃତିର ବିମର୍ଶ' ଆଲୋଚନା କ୍ଷେତ୍ରରେ ଅଗ୍ରଗାମୀ ଚିନ୍ତକମାନେ ଦୁଇ ଭାଗରେ ବିଭକ୍ତ ହୋଇପଡ଼ିଛନ୍ତି । ଗୋଟିଏ ଭାଗ ମାର୍କ୍ସୀୟ ବା ବାମପନ୍ଥୀ ଚିନ୍ତାଧାରାର ଅନୁଗାମୀ ଓ ଅନ୍ୟ ଭାଗଟି ହେଲା 'ମୁକ୍ତ ଚିନ୍ତକ' ଗୋଷ୍ଠୀ । ଏହି ଦ୍ୱିତୀୟ ଶ୍ରେଣୀର ଚିନ୍ତକମାନେ ସମାଜବାଦୀ, ସାମ୍ୟବାଦୀ, ପୁଞ୍ଜିବାଦୀ ଚିନ୍ତନକୁ ଚଳୁ କରି ସାରିଛନ୍ତି । ଏବେ ସେମାନେ ସଂସ୍କୃତିର ତାତ୍ତ୍ୱିକତା କ୍ଷେତ୍ରରେ କ୍ରମଶଃ ଏକ ନୂତନ ଗୋଷ୍ଠୀରେ ରୂପାନ୍ତରିତ ହୋଇସାରିଛନ୍ତି । ସେମାନେ ଅତୀତ ଚିନ୍ତନ କଥା ସ୍ମରଣ କଲାବେଳେ ବୁଦ୍ଧ, ଗାନ୍ଧି, ମାର୍କ୍ସ, ଲେନିନ୍, ମାଓଙ୍କ ସମୟଠାରୁ ଯଥେଷ୍ଟ ଆଗରେ ବୋଲି ମନେ ହେଉଛି । ଅବଶ୍ୟ ଏକଥା ସତ୍ୟ ଯେ, ଏମାନେ ସଂପୂର୍ଣ୍ଣ ବା ନିରଙ୍କୁଶ କ୍ଷମତାର ଅଧିକାରୀ ନୁହଁନ୍ତି — ଅନ୍ତତଃ ବୌଦ୍ଧିକତା କ୍ଷେତ୍ରରେ । ଏହି କ୍ଷମତା ପ୍ରୟୋଗ କ୍ଷେତ୍ରରେ ଗଣମାଧ୍ୟମ ଅଗ୍ରଗାମୀ ନେତୃତ୍ୱ ନେବାର ସମ୍ଭାବନା ଥିଲେ ବି ସେମାନଙ୍କ ଉପରେ ମଧ୍ୟ ରାଷ୍ଟ୍ର କର୍ତ୍ତୃତ୍ୱ ଜାରୀ କରିବାକୁ ଚେଷ୍ଟାକରି ଆସିଛି । ଗାନ୍ଧିଜୀ ଏହିଭଳି ଏକ 'ମୁକ୍ତ ଚିନ୍ତକ' ଥିଲେ । ତେଣୁ ରାଷ୍ଟ୍ର ଯେତେବେଳେ ଜନ୍ମ ନେଲା, ସେତେବେଳେ ସେ ଏହି ପ୍ରକ୍ରିୟାଠାରୁ ନିଜକୁ ଦୂରେଇ ରଖିବାକୁ ଚେଷ୍ଟା କରିଥିଲେ ।

ଏବେ ପାରିଭାଷିକ ତାତ୍ତ୍ୱିକତାରେ ଏହି ପ୍ରଶାସନିକତା ପ୍ରତ୍ୟୟର ଗତିଧାରାକୁ ଲକ୍ଷ୍ୟ କରିବା । ପଶ୍ଚିମ ଭୂଖଣ୍ଡରେ ଯେଉଁଠି ଗଣତନ୍ତ୍ର ସଂପର୍କୀୟ ଚିନ୍ତନ ସୃଷ୍ଟି ହୋଇଥିଲା, ମାଇକେଲ ଫୁକୋ, ଏହି ଚିନ୍ତନକୁ ବିଶ୍ଳେଷଣ କରିଥିଲେ ଓ ସେଥିପାଇଁ ଏକ ବିତର୍କର ସୂତ୍ରପାତ କରିଥିଲେ, ଯାହା ଏପର୍ଯ୍ୟନ୍ତ ତାର ପ୍ରଭାବ ବିସ୍ତାର କରି ଆସିଛି । ଫୁକୋ ଚିନ୍ତନ ଅନୁଯାୟୀ ପ୍ରଶାସନ ଏକ ସଂରଚନାତ୍ମକ ଅନୁଷ୍ଠାନ ନୁହେଁ ବରଂ

ପ୍ରଶାସନର କାର୍ଯ୍ୟ ଏକ 'କଳା' । ଏହା ଅର୍ଥନୈତିକ କ୍ଷେତ୍ରରେ ଏପରି ସୁଶାସନ ସୃଷ୍ଟି କରିବାର ଆବଶ୍ୟକତା ରହିଛି, ଯେଉଁଠି ପ୍ରଶାସନିକ ଅନୁଷ୍ଠାନ ସମୂହ ଓ ସେଥିରେ ବ୍ୟବହୃତ କୌଶଳଗୁଡ଼ିକ ଏପରି ହେବ ଯାହା ଗଣଙ୍କର ଅଭିପ୍ସା ଓ ବିଚାରବୋଧକୁ ଗ୍ରହଣ କରିବାରେ ସମ୍ବେଦନଶୀଳ ହୋଇପାରିବ । ତେଣୁ ଏକବିଂଶ ଶତାବ୍ଦୀରେ ଏହି ଗଣଙ୍କ ନିକଟରେ ଅର୍ଥନୈତିକ ଅଭିବୃଦ୍ଧିକୁ ପହଞ୍ଚାଇବାକୁ ହିଁ ପଡ଼ିବ । କାରଣ ଏବର ପ୍ରଶାସନ ପାରମ୍ପରିକ ଏକ ଶାସନ କଳ ନୁହେଁ । ଏହା ରାଷ୍ଟ୍ର/ରାଜ୍ୟର ସ୍ୱାସ୍ଥ୍ୟଗତ ଓ ଜନକଲ୍ୟାଣକର ଯୋଜନାକୁ ଗଣାଭିମୁଖୀ କରିବାକୁ ଚେଷ୍ଟିତ ହେବା କାମ୍ୟ । ଏହା କରିବାକୁ ହେଲେ 'ସ୍ଥାନୀୟ ଜ୍ଞାନ ସଂପଦ' (indigenous knowledge system) କୁ ପ୍ରାଧାନ୍ୟ ଦେବାକୁ ପଡ଼ିବ । ଗାନ୍ଧିଜୀ ଏହି ପ୍ରକ୍ରିୟା ବିଷୟରେ ସଚେତନ ଥିବାରୁ 'ଗ୍ରାମ ସ୍ୱରାଜ' ପ୍ରତ୍ୟୟ ସୃଷ୍ଟି କରିଥିଲେ ।

ପ୍ରଶାସନିକତାକୁ ଗଣାଭିମୁଖୀ କରିବାକୁ ହେଲେ ଆଧୁନିକ କାଳରେ ସୃଷ୍ଟି ହୋଇଥିବା କେତେକ ବ୍ୟବସ୍ଥାକୁ ଗ୍ରହଣ କରିବାକୁ ହେବ — ସ୍ଥାନୀୟ ଜ୍ଞାନରାଶିର ସଦୁପଯୋଗ କରିଆରେ । ଏହି ବ୍ୟବସ୍ଥାଗୁଡ଼ିକ ମଧ୍ୟରେ ସାମାଜିକ ପରିସଂଖ୍ୟାନ, ବୀମାର ପ୍ରଚଳନ, ଅପରାଧ ପ୍ରବଣତାର ତାତ୍ତ୍ୱିକ ଦିଗ, ଦାରିଦ୍ର୍ୟର ସମସ୍ୟା ଓ ଶ୍ରମ ସଂସ୍କୃତିକୁ ମଧ୍ୟ ଗଣାଭିମୁଖୀ କରିବାକୁ ହିଁ ପଡ଼ିବ । ଏହା ଗାନ୍ଧିଜୀଙ୍କର 'ସ୍ୱଦେଶ' ଚିନ୍ତନରେ ସୂଚିତ ହୋଇଥିଲା । ତେଣୁ ଏ କ୍ଷେତ୍ରରେ ମୁକ୍ତ ଚିନ୍ତକମାନଙ୍କର ବିଚାର ବିମର୍ଶକୁ ସ୍ୱୀକୃତି ଦେବାକୁ ପଡ଼ିବ ।

ପ୍ରଶାସନିକତା ମଧ୍ୟ ପ୍ରଶାସନ କ୍ଷେତ୍ରରେ ଥିବା ବିଭିନ୍ନ ଅନୁଷ୍ଠାନ (ପଞ୍ଚାୟତ ସ୍ତରରୁ ସଚିବାଳୟ ପର୍ଯ୍ୟନ୍ତ) ସମୂହର ସମୟୋପଯୋଗୀ ପରିବର୍ତ୍ତନ ଆବଶ୍ୟକ କରେ । ପ୍ରଶାସନ ଆଉ କେବଳ କର୍ତ୍ତୃତ୍ୱ ଜାରୀ ରଖିବା, ବା ନିୟନ୍ତ୍ରକ ହେବା ସମ୍ଭବ ନୁହେଁ । ପ୍ରଥମେ ଏହି ଅନୁଷ୍ଠାନଗୁଡ଼ିକର ସୁପରିଚାଳନା ଆବଶ୍ୟକ । ଏଗୁଡ଼ିକୁ ସ୍ୱୟଂଚାଳିତ କରିବା କ୍ଷେତ୍ରରେ ପ୍ରଚେଷ୍ଟା ଆବଶ୍ୟକ । ନିଷ୍ପତ୍ତି ଗ୍ରହଣ କରିବା କ୍ଷେତ୍ରରେ ଏହା ବ୍ୟକ୍ତିବିଶେଷ, ପରିବାର, ନିର୍ଦ୍ଦିଷ୍ଟ ଗୋଷ୍ଠୀର ବିକାଶ କରିବା ଓ ସାମୂହିକ ବିକାଶକୁ ଅଗ୍ରାଧିକାର ଦେବା ଉଚିତ୍ । ଅନ୍ୟ ଭାଷାରେ କହିଲେ, ଏହି ପ୍ରଶାସନିକତା ଏବେ 'ରାଷ୍ଟ୍ରୀୟକରଣ' ଆଭିମୁଖ୍ୟର ଦୁର୍ବଳତା ସ୍ୱୀକାର କରି ଏହାକୁ ଘରୋଇକରଣ ଛାଞ୍ଚରେ ପ୍ରସ୍ତୁତ କରିବାର ଆଭିମୁଖ୍ୟ ଗ୍ରହଣ କରିସାରିଛି । ତେଣୁ ଏବେ ପ୍ରଶାସନ ଓ 'ସଭ୍ୟ ସମାଜ' (Civil-Society) ମଧ୍ୟରେ ବଢ଼ି ଯାଇଥିବା ବ୍ୟବଧାନକୁ ସଂକୁଚିତ କରି ଗଣମାନସକୁ ସ୍ୱୀକୃତି ଦେବାର ପ୍ରଚେଷ୍ଟା ପ୍ରାୟ ଗତ ଦଶକରେ ବିଶ୍ୱର ଅଧିକାଂଶ

ରାଷ୍ଟ୍ର କ୍ଷେତ୍ରରେ ଦେଖାଦେଇ ସାରିଛି । ସେଥିରୁ ଦୂରେଇ ରହିବା ଏବେ ଭାରତ ବା ଓଡ଼ିଶା ପକ୍ଷରେ ଆଉ ସମ୍ଭବପର ନୁହେଁ । ଫୁକୋଙ୍କ ପରି ଆମେ ଏବେ ଭାରତ ବା ଓଡ଼ିଶାର ରାଜନୈତିକ ବାତାବରଣକୁ ଏକ ଦୁଃଖଦ ଅନୁଭବ ଭାବରେ ବିଚାରକରି ଆସିଛୁ । ଏହା କେତେକାଂଶରେ ସତ୍ୟ ହେଲେ ମଧ୍ୟ ସାଂପ୍ରତିକ ସାହିତ୍ୟରେ ଏହି ଦୁଃଖଦ ଅନୁଭୂତିର ଯେଉଁ ଚିତ୍ର ଉପସ୍ଥାପିତ ହେଉଛି, ତାହା ପରୋକ୍ଷରେ ପ୍ରଶାସନିକ ଜ୍ଞାନ ଗାରିମାକୁ ଅସ୍ୱୀକାର କରି ନୂତନତାର ସନ୍ଧାନରେ ବ୍ରତୀ ହେବ । ଜଗତୀକରଣ ଫଳରେ ଗଣମାଧ୍ୟମ ଯେପରି ବ୍ୟାପକ ଭାବରେ ନିଜର ବାର୍ତ୍ତାକୁ ଗଣଙ୍କ ନିକଟରେ ପହଞ୍ଚାଇ ପାରିଛି, ତାହା ଅସନ୍ତୋଷ ବୃଦ୍ଧି ତ ନିଶ୍ଚୟ କରିବ । କିନ୍ତୁ ତାହା ସଂଗେ ସଂଗେ ପ୍ରଶାସନିକତାର 'ପ୍ରତିବନ୍ଧକ' ଆପଣାଛାଏଁ ଭୁଶୁଡ଼ି ପଡ଼ିବ । ଏହା ମଧ୍ୟ ପ୍ରତିବାଦ ଓ ପ୍ରତିରୋଧର ଶକ୍ତିକୁ ଉଜ୍ଜୀବିତ କରିବ । ତେଣୁ ଗଣମାନେ ଯେଉଁଠି ପ୍ରଶାସନିକତାର ନଗ୍ନ ଓ ଦୁର୍ବଳ ମନୋଭାବକୁ ମୁହାଁମୁହିଁ ସାମନା କରିବେ, ସେତେବେଳେ ପ୍ରଶାସନିକ ବିଧି ବ୍ୟବସ୍ଥାରେ ପରିବର୍ତ୍ତନ ନ ଆଣିପାରିଲେ ରାଜନୈତିକ ନେତୃତ୍ୱ ହୁଏତ 'ଏକଛତ୍ରବାଦୀ' ହୋଇପଡ଼ିବ କିମ୍ବା 'ରକ୍ଷଣଶୀଳ ମନୋଭାବ' ପ୍ରଦର୍ଶନ ଦ୍ୱାରା ପ୍ରତ୍ୟାଖ୍ୟାତ ହେବ ।

ତେଣୁ ଏବେ ସାମାଜିକ ଓ ରାଜନୈତିକ ଚିନ୍ତନ କ୍ଷେତ୍ରରେ 'ପ୍ରଶାସନିକତା' ଏକ 'ସାଂସ୍କୃତିକ ପ୍ରତ୍ୟୟ' ଭାବରେ ନିଜର ସ୍ଥାନ ନିରୂପଣ କରିସାରିଛି । ତେଣୁ ରାଜନୈତିକ ଚିନ୍ତନ କ୍ଷେତ୍ରରେ ଯେଉଁ ଦୁଇଟି ମୁଖ୍ୟଧାରା - ମାର୍କ୍ସୀୟ ଓ ଉଦାରବାଦୀ, ତାହାର ମାନ୍ୟତା ହ୍ରାସ ପାଇବାକୁ ବାଧ୍ୟ । ବରଂ ବାସ୍ତବବାଦୀ ସଂସ୍କାର ଭିତ୍ତିକ କୌଶଳ ହିଁ ପ୍ରଶାସନିକତାର ପରିଧି ମଧ୍ୟରେ ସାଂସ୍କୃତିକ ବିଚାରବୋଧ ପାଇଁ ନିଜର ସ୍ଥାନ ନିରୂପଣ କରିବା ଅବଶ୍ୟମ୍ଭାବୀ । ଏହି ପରିପ୍ରେକ୍ଷୀରେ 'ସଭ୍ୟ ସମାଜ' ହିଁ ସଭ୍ୟ ସେବକଙ୍କର (Civil-Servants) ଦୃଷ୍ଟିଭଙ୍ଗୀ, ବ୍ୟବହାର, ନିଷ୍ପତ୍ତି ନେବାର ଆଭିମୁଖ୍ୟକୁ ଯୁଗୋପଯୋଗୀ କରିପାରିଲେ ହିଁ ସମସ୍ୟାର ସମାଧାନ ସମ୍ଭବ । ଏ କ୍ଷେତ୍ରରେ ଅଳ୍ପଦିନ ତଳେ ପ୍ରକାଶ ପାଇଥିବା ଖଣ୍ଡିଏ ପୁସ୍ତକର ନାମୋଲ୍ଲେଖ କରି ଏହି ପରିଭାଷାଗତ ତାତ୍ତ୍ୱିକତା ସଂପର୍କରେ ଏହି ପ୍ରାରମ୍ଭିକ ଆଲୋଚନା କରୁଛି । ପୁସ୍ତକଟିର ନାମ 'ଗାନ୍ଧିଜ୍ ଓ୍ୱେଜ୍ : ହ୍ୟାଣ୍ଡ ବୁକ ଅଫ୍ କନଫ୍ଲିକ୍ଟ ରିଜଲ୍ୟୁସନ୍' (Gandhi's Ways : Handbook of Conflict Resolution) ।



# ବ୍ୟାଖ୍ୟା (Interpretation)

ବ୍ୟାଖ୍ୟାର ତାତ୍ତ୍ୱିକତା ଓ ବ୍ୟାଖ୍ୟା Interpretation ମଧ୍ୟରେ ଏକ ସୂକ୍ଷ୍ମ ବ୍ୟବଧାନ ରହିଛି । ''ବ୍ୟାଖ୍ୟାର ତାତ୍ତ୍ୱିକତା'' (Hermeneutics)କୁ ଅନେକ ସମୟରେ ସମୀକ୍ଷକମାନେ 'ବ୍ୟାଖ୍ୟା' ଭାବରେ ଗ୍ରହଣ କରିଥାନ୍ତି । କିଂତୁ ଏହା ପ୍ରକୃତରେ ''ବ୍ୟାଖ୍ୟା''ର ବିଭିନ୍ନତା, କୌଶଳ ଓ କେଉଁ ଭାବରେ ଏହା କରାଯିବା ଆବଶ୍ୟକ, ତାହା ଉପରେ ଅଧିକ ପ୍ରାଧାନ୍ୟ ଦେଇଥାଏ । ତେଣୁ ''ବ୍ୟାଖ୍ୟା''ର ''ତାତ୍ତ୍ୱିକତା''କୁ ଅନ୍ୟ ଅର୍ଥରେ କହିଲେ ''ବ୍ୟାଖ୍ୟାର ବ୍ୟାକରଣ'' କୁହାଯାଇପାରେ । କେଉଁ ନିର୍ଦ୍ଦିଷ୍ଟ ମାର୍ଗରେ 'ବ୍ୟାଖ୍ୟା' କରାଯିବ (ଯେପରି ଭାଷାତାତ୍ତ୍ୱିକ, ନାନ୍ଦନିକ, ଐତିହାସିକ, ଗୋଷ୍ଠୀ ବର୍ଣ୍ଣନ ଶୈଳୀ ଆଦି) ତାହା ବ୍ୟାଖ୍ୟାର ତାତ୍ତ୍ୱିକତାରୁ ହିଁ ସୂଚିତ ହୋଇଥାଏ । ଏହା ମଧ୍ୟ ସେହି ''ସତ୍ୟ''ର ପ୍ରକାଶ ଭଙ୍ଗୀ ଓ ଜଡ଼ ବିଜ୍ଞାନର ମାର୍ଗ ଉପରେ ନିର୍ଭର କରି, ପ୍ରଥମେ ଜର୍ମାନ୍ ଦାର୍ଶନିକ, ହାଇଡ଼େଗାର ଓ ଗାଡ଼ାମାରଙ୍କର ଚିନ୍ତନରୁ ସୃଷ୍ଟି । କିଂତୁ ଦାର୍ଶନିକ ଦୃଷ୍ଟିକୋଣରୁ ''ବ୍ୟାଖ୍ୟାର ତାତ୍ତ୍ୱିକତା'' ପ୍ରତିଷ୍ଠା କରିବା କେତେକ ସାଧାରଣ ତଥା ମୌଳିକ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇପାରିନାହିଁ । ଗ୍ରନ୍ଥର ବା ''ପାଠ'' (Text)ର ସ୍ଥାୟୀ ଅର୍ଥ କ'ଣ ? ପୁଣି ବ୍ୟକ୍ତିଗତ ଭାବରେ ଗ୍ରନ୍ଥକାର, ପାଠକ ଓ ଯେଉଁ ସାମାଜିକ ପରିବେଶରେ ଏହି ଲେଖା ପ୍ରକାଶିତ, ସେଠାରେ ''ସତ୍ୟର ଚିରନ୍ତନ ଅର୍ଥ କେତେ ପରିମାଣରେ ଉଦ୍‌ଭାସିତ'' ? ପ୍ରତ୍ୟେକ ଲେଖକ, ପାଠକ ''ପାଠ''କୁ ଏହି ପରିପ୍ରେକ୍ଷୀରେ କଳନା କରିବା ଆବଶ୍ୟକ ନୁହେଁ କି ? ଅର୍ଥାତ୍ (୧) ପାଠରେ ''ସ୍ଥାୟୀ ସତ୍ୟଟି'' କେଉଁ ପରିମାଣରେ ବା କିଭଳି ପ୍ରକାଶ ପାଇଛି (ପ୍ରାମାଣିକତା ସହ) । (୨) କେଉଁ ସାମାଜିକ/ଐତିହାସିକ ପରିବେଶରେ ସେହି 'ସ୍ଥାୟୀ ଅର୍ଥ'କୁ ଗ୍ରନ୍ଥାକାର କିଭଳି ପ୍ରକାଶ କରିଛନ୍ତି । (୩) ପୁଣି ଗ୍ରନ୍ଥର ବା 'ପାଠ'ର ପାଠକ ଏହି ''ସ୍ଥାୟୀ ଅର୍ଥକୁ'' ଗ୍ରହଣ କରିବାକୁ ସକ୍ଷମ ହୋଇଛନ୍ତି କି ?

ଉଇଲହେଲ୍ମ ଡିଲିଥ୍‌ଙ୍କ 'ବ୍ୟାଖ୍ୟାଚକ୍ର' ପ୍ରସ୍ତାବନା ଅନୁଯାୟୀ ବିଚାରକଲେ, ଏହି 'ପାଠ' ଓ ''ପାଠର ବିଷୟବସ୍ତୁ'' ମଧ୍ୟରେ ଏକ ଅନ୍ତର୍ନିହିତ ଦ୍ୱନ୍ଦ୍ୱ ରହିଛି - ଯାହା

ବ୍ୟାଖ୍ୟାମାନଙ୍କର ବା ବ୍ୟାଖ୍ୟା ସମୂହରେ ଓ ''ବ୍ୟାଖ୍ୟାର ତାତ୍ତ୍ୱିକତାରେ'' ଆପଣାଛାଏଁ ''ଚକ୍ରବ୍ୟୂହ'' ସୃଷ୍ଟି କରି ସାରିଛି । ତେଣୁ ଗ୍ରନ୍ଥକାରର ଲକ୍ଷ୍ୟ ଓ ପ୍ରକାଶଭଙ୍ଗୀକୁ ବିଭିନ୍ନ ବ୍ୟାଖ୍ୟାକାର ବିଭିନ୍ନ ଭାବରେ ବ୍ୟାଖ୍ୟା କରିବା ସମ୍ଭବ ଓ ସ୍ୱାଭାବିକ ମଧ୍ୟ ।

''ବ୍ୟାଖ୍ୟାର ତାତ୍ତ୍ୱିକତା'' କ୍ଷେତ୍ରରେ ସାହିତ୍ୟ ସମେତ ଆଧୁନିକ କଳାକୁ ପାରମ୍ପରିକ ସାହିତ୍ୟ ସମାଲୋଚନା ଓ ''ସଂରଚନାବାଦୋତ୍ତର''· ପରିପ୍ରେକ୍ଷୀରେ ଆଲୋଚନା କରି ସେହି ''ପୁରାତନ ପ୍ରଶ୍ନ''ର ନୂତନ ଅର୍ଥର ବ୍ୟାଖ୍ୟା ''ସ୍ଥାୟୀ ଅର୍ଥର'' ନିକଟବର୍ତ୍ତୀ ତାହା ବିଚାର କରିବାକୁ ହେବ । ଅର୍ଥାତ୍ କୌଣସି ଏକ ''ପାଠ''ରେ କେତେ ପରିମାଣର ଏହି 'ସ୍ଥାୟୀ ଅର୍ଥ' ପ୍ରକାଶ କରିବା ଦିଗରେ ଗ୍ରନ୍ଥକାରର କର୍ତ୍ତୃତ୍ୱ କେତେ ପରିମାଣରେ ରହିଛି ? ଏହି ବିତର୍କରୁ ରୋନାଲ୍ଡ ବାର୍ଥେସ୍‌ଙ୍କର ବିତର୍କିତ ବିଷୟ *ଗ୍ରନ୍ଥକାରର ମୃତ୍ୟୁ* ( ୧ ୯ ୬୮ ) ପ୍ରକାଶ ପାଇଲା । ଆମେରିକାନ୍ ଆଲୋଚକ ସୁଜାନ୍ ସୋନ୍‌ଟାଗ ( ୧ ୯ ୬୬ ) ସେହି ଶୀର୍ଷକରେ ଏକ ଗ୍ରନ୍ଥ ରଚନା କଲେ - *The Death of the Author* । ଏଥିରେ ''ବ୍ୟାଖ୍ୟା ବିଷୟରେ'' ଏକ ବିତର୍କର ସୂଚନା ଦେଲେ ସୋନ୍‌ଟାଗ । ଭାବ-ବିଜ୍ଞାନ, (Ideology), ଅଭିଚର୍ଚ୍ଚା (Discourse) ଓ ପାଠ-ପାଠ ମଧ୍ୟରେ ଥିବା ସଂପର୍କର ବିଶ୍ଳେଷଣ ଫଳରେ ଯେ କୌଣସି ନିର୍ଦ୍ଦିଷ୍ଟ ପାଠ ବା ଗ୍ରନ୍ଥର ବ୍ୟାଖ୍ୟା କ୍ରମେ ବାଧାପ୍ରାପ୍ତ ହେଲା । ତେଣୁ ଗୋଟିଏ ପାଠରୁ ଅନ୍ୟ ପାଠ ମଧ୍ୟରେ ଥିବା ସଂଯୋଗସୂତ୍ର ଓ ଯେଉଁ ଆନୁଷ୍ଠାନିକ ପରିବେଶ (Institutional context)ରେ ଏହାକୁ ''ବ୍ୟାଖ୍ୟା'' କରାଗଲା ସେହି ଆନୁଷ୍ଠାନିକତା ''ପାଠ''ର ପ୍ରକାଶକ ଓ ଗ୍ରାହକମାନଙ୍କୁ ଏକ ଶ୍ରେଣୀଭୁକ୍ତ କରିଦେଲା । ଏହା ଫଳରେ ''ବ୍ୟାଖ୍ୟାର ନୂତନ ସମ୍ପ୍ରଦାୟ'' ସୃଷ୍ଟି ହେଲା ।

ତେଣୁ କୌଣସି ''ପାଠରେ'' ଅର୍ଥ ବୁଝିବାକୁ ହେଲେ - କେବଳ ସେହି 'ପାଠ'କୁ ବାରମ୍ବାର ପଢ଼ିବା ବା ସମୀକ୍ଷା କରିବା କ୍ଷେତ୍ରରେ ଏହା ସୀମାବଦ୍ଧ ରହିଲା ନାହିଁ, କିମ୍ବା ସେହି ପାଠର ମୂଲ୍ୟାଙ୍କନ କରିବା ମଧ୍ୟ ସମୀକ୍ଷକ ପକ୍ଷରେ ସମ୍ଭବ ହେଲାନାହିଁ । ପ୍ରାଧାନ୍ୟ ଦିଆଗଲା — ସମୀକ୍ଷକ ''ପାଠ'' ଓ ''ପାଠକ'' ମଧ୍ୟରେ ଥିବା ଅନ୍ତର୍ନିହିତ

ସଂପର୍କକୁ ଆବିଷ୍କାର କରିବା ଆବଶ୍ୟକ । ତେଣୁ ''ବ୍ୟାଖ୍ୟାକାର'', ଗ୍ରନ୍ଥକାରର ''ଉଦ୍ଦେଶ୍ୟ''କୁ ମଧ୍ୟ ଆବିଷ୍କାର କରିବା ପ୍ରୟୋଜନୀୟ । ଏଥିପାଇଁ କେବଳ ''ଶାସ୍ତ୍ରୀୟ ପାଠ'' (Canonical Text)ର ଉର୍ଦ୍ଧ୍ବକୁ ଯାଇ 'ଗ୍ରନ୍ଥକାର' ଯେଉଁ 'ସତ୍ୟ' ଆବିଷ୍କାର କରିବା ପାଇଁ ଚେଷ୍ଟିତ ଓ ଗ୍ରନ୍ଥର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ, ''ଗ୍ରନ୍ଥକାରୀୟ'' ପ୍ରକାଶ ଭଙ୍ଗୀକୁ, ମଧ୍ୟ ବିଶ୍ଳେଷଣ କରିବା ଆବଶ୍ୟକ । ଫଳରେ ଗ୍ରନ୍ଥକାର, ସମୀକ୍ଷକ, ପାଠକ ମଧ୍ୟରେ ସମନ୍ୱୟ ରକ୍ଷା କରି ''ବ୍ୟାଖ୍ୟାର ତାତ୍ତ୍ୱିକତା''କୁ ବୁଝି ହେବ । କୌଣସି ନିର୍ଦ୍ଦିଷ୍ଟ ପ୍ରଚଳିତ ''ତାତ୍ତ୍ୱିକତା''ର ଧାରାରେ ଏହାକୁ ବିଚାର କଲେ ତାହା ''ତାତ୍ତ୍ୱିକତା''କୁ ଉଚ୍ଚକୋଟୀର କରିପାରିବ ନାହିଁ ।

ଆଧୁନିକତା ବା ପରାଧୁନିକତାର ଯେଉଁ ପ୍ରଭାବ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଉପଲବ୍ଧ ହେଉଛି, ସେ ସଂପର୍କରେ ସଂସ୍କୃତି ଓ ସାହିତ୍ୟର ଭାଷା ବିଜ୍ଞାନୀମାନେ ଏହି ବ୍ୟାଖ୍ୟାର ତାତ୍ତ୍ୱିକତାକୁ କିପରି ଯୁଗୋପଯୋଗୀ କରିପାରିବେ ସେ ଦିଗରେ ଧ୍ୟାନ ଦେବା ଆବଶ୍ୟକ । ଏହି ଭିତ୍ତିଭୂମିକୁ ଆଖିରେ ରଖି ସାହିତ୍ୟ ବା ସଂସ୍କୃତି ବିଶ୍ଳେଷକ ''ବ୍ୟାଖ୍ୟାର ତାତ୍ତ୍ୱିକତାକୁ'' ବୁଝି ସେଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ପଡ଼ିବ । ଏହି 'ପ୍ରତ୍ୟୟ'କୁ ବୁଝିବାକୁ ହେଲେ - 'ବାସ୍ତବବାଦ' (Realism) ପ୍ରତିନିଧିତ୍ୱବାଦ (Representationism) ଓ ମୂଲ୍ୟବୋଧ (Value) ଭଳି ପ୍ରତ୍ୟୟଗୁଡ଼ିକର ସାରବତ୍ତା ଜାଣିବା ମଧ୍ୟ ସମୀକ୍ଷକ କ୍ଷେତ୍ରରେ ଆବଶ୍ୟକ ।



# ବୀଜିକାଜ୍ଞାନ (Geneology)

ପ୍ରତ୍ୟେକ ''ସଂସ୍କୃତି''ରେ ବଂଶ ପରମ୍ପରାକୁ ଅନୁସରଣ କରି ଯେପରି ବ୍ୟକ୍ତିତ୍ୱ ମାପିବାର ଚେଷ୍ଟା କରାଯାଏ, ସେହିପରି ସାଂସ୍କୃତିକ ଅଭିବ୍ୟକ୍ତିରେ ମଧ୍ୟ ଏହି ପରଂପରା ଅନୁସୃତ ହୋଇଥାଏ । ଇଂରାଜୀରେ ଏହି ପ୍ରତ୍ୟୟର ନାମ geneology । ସରଳ ଓଡ଼ିଆରେ କହିଲେ ''ଜିନ୍'' ସଂପର୍କୀୟ ବିଜ୍ଞାନ । ''ଜିନ୍''ର ପାରିଭାଷିକ ତାତ୍ତ୍ୱିକତା ଏକ ''ମାନକ'' ସୃଷ୍ଟି କରିନାହିଁ - ଅନ୍ତତଃ ଭାରତୀୟ ବା ଓଡ଼ିଶାର ''ସାଂସ୍କୃତିକ'' ଅଭିବ୍ୟକ୍ତିକୁ ବିଶ୍ଳେଷଣ କରିବା ''ଚର୍ଚ୍ଚା''ରେ । ଇତିହାସକାର ମାନେ ଏହାକୁ ''ବଂଶଲତା'', ''ବଂଶ-ବୃକ୍ଷ'' ବା କେହି କେହି 'କାଳାନୁକ୍ରମିକ ଜୀବନଧାରା' ଆଦି ବହୁ ନାମରେ ନାମିତ କରିଛନ୍ତି । ବିଜ୍ଞାନର ଅଭ୍ୟୁଦୟ ଫଳରେ ଜୀବ ବିଜ୍ଞାନୀମାନେ ମଧ୍ୟ ଏହି ''ଜିନ୍''କୁ ''ବଂଶର ବୈଶିଷ୍ଟ୍ୟ'' ଭାବରେ ସୂଚିତ କରିଥାନ୍ତି । ତେଣୁ ''ସଂସ୍କୃତି''ର ''ସାଂସ୍କୃତିକତାରେ'' ଏହାକୁ ଭାରତର 'ବେଦ', 'ଶାଖା', 'ପ୍ରବର', 'ଗୋତ୍ର' ଆଦି କ୍ଷେତ୍ରରେ ବ୍ୟବହାର ଅବ୍ୟାହତ ରଖି ଆସିଛି । ସେଇଥିପାଇଁ 'କର୍ମକାଣ୍ଡ' ଅନୁସୃତ ଚଳଣୀରେ ''ସପିଣ୍ଡ', 'ସଗୋତ୍ର' ବିବାହ ମଧ୍ୟ ବାରଣ କରାଯାଇଛି । ଏହା ପରେ ପରେ ''ପ୍ରଜାତି'' (Racial) ତତ୍ତ୍ୱ ପ୍ରତିଷ୍ଠା ଲାଭ କରିବା ପରେ ବଂଶ ଚିହ୍ନିତ କରିବା ପାଇଁ ଚର୍ଚ୍ଚା କ୍ଷେତ୍ରରେ, ''ସାହିତ୍ୟ ଓ ସାଂସ୍କୃତିକ ଅଭିବୃଦ୍ଧି'' କାଳରେ ମଧ୍ୟ ଏହି ଚର୍ଚ୍ଚା ବିଶାରଦମାନେ ପ୍ରଜାତିଗତ ଦୃଷ୍ଟିକୋଣ ପରିହାର କରି ନାହାନ୍ତି । ବିଜ୍ଞାନ କ୍ଷେତ୍ରରେ ମଧ୍ୟ ''ଜିନ୍''ର ଆଲୋଚନା, ଗବେଷଣା ଅଭିବୃଦ୍ଧି ଲାଭ କରି ଚିକିତ୍ସା ବିଜ୍ଞାନ ଆଦିରେ ଏହାର ପ୍ରସାର ଲାଭ କରଛି ।

କିନ୍ତୁ ଭାରତରେ ବା ଓଡ଼ିଶାରେ ''ସାଂସ୍କୃତିକ ଚର୍ଚ୍ଚା'' କ୍ଷେତ୍ରରେ ଏହାର ବିଶଦ ଆଲୋଚନା ଦୃଷ୍ଟିଗୋଚର ହୁଏନାହିଁ । ଅବଶ୍ୟ ଏ ସଂପର୍କୀୟ ବହୁ ''ସାହିତ୍ୟ'' ଓ ଅନ୍ୟାନ୍ୟ କଳାତ୍ମକ ଅଭିବ୍ୟକ୍ତି ପ୍ରକାଶ ଲାଭ କରିସାରିଛି । କିନ୍ତୁ ସଂସ୍କୃତିର ଚର୍ଚ୍ଚା ବିଶାରଦମାନେ ସେଭଳି ''ଅଭିବ୍ୟକ୍ତି'' କୁ ଚିହ୍ନିତ କରି ଅନୁରୂପ 'ସମୀକ୍ଷା' ପ୍ରସ୍ତୁତ କରିବା ଦୃଷ୍ଟିଗୋଚର ହୁଏନାହିଁ ।

ଏହି ''ପ୍ରତ୍ୟୟଟି''ରେ ଉଭୟ ''ସାହିତ୍ୟିକ'' ଓ ''ବୈଜ୍ଞାନିକ'' ଦୃଷ୍ଟିଭଙ୍ଗୀରେ ସମନ୍ୱୟ ଲକ୍ଷ୍ୟ କରାଯାଇପାରେ । ତେଣୁ ଏହା ''ବର୍ଣ୍ଣ ଶଙ୍କର'' (Hybrid) ପର୍ଯ୍ୟାୟଭୁକ୍ତ ହୋଇସାରିଛି । ଏଠାରେ ପାଶ୍ଚାତ୍ୟ ସାହିତ୍ୟ ଓ ସଂସ୍କୃତି ଚର୍ଚ୍ଚାରେ ଏହା କିଭଳି ଆଲୋଚିତ ହୋଇଛି, ତା'ର ସୂଚନା ମାତ୍ର ଦିଆ ଯାଉଛି ।

ମାଇକେଲ୍ ଫୁକୋ (Foucault) ପ୍ରଥମେ ତାଙ୍କର ଆଲୋଚନା "*ଶୃଙ୍ଖଳା ଓ ଦଣ୍ଡବିଧାନ*" (*Discipline and Punishment*) ଗ୍ରନ୍ଥରେ ଏହି ପ୍ରତ୍ୟୟର ସହାୟତା ନେଇଥିଲେ । "ଇତିହାସ" ରଚନାରେ ଏହି ପ୍ରତ୍ୟୟର ବ୍ୟବହାର କ୍ଷେତ୍ରରେ ଯେଉଁ ଜଟିଳତା ଦେଖା ଦେଇଥିଲା, ତାହା "ବିଧିସମ୍ମତ ଜ୍ଞାନ" ବୋଲି ବିଚାର କରାଗଲା ନାହିଁ । କାରଣ କ୍ରମେ "ମୌଖିକତା" (Orality)ର ଲିପିକରଣ ହେବା ଫଳରେ ଜ୍ଞାନ ରାଜ୍ୟରେ ଏକ ବିସ୍ଫୋରଣ ସୃଷ୍ଟି ହୋଇଛି । ତେଣୁ କୌଣସି ସମୀକ୍ଷାକୁ 'ବିଧିସମ୍ମତ' (ଏଠାରେ ବିଧିର ଅର୍ଥ "ଯମ + ନିୟମ" - ବାହ୍ୟ ଶୃଙ୍ଖଳା ଓ ଅନ୍ତଃଶୃଙ୍ଖଳା ଭାବରେ ଗ୍ରହଣ କରାଯାଉଛି) । ଏଠାରେ ମଧ୍ୟ "ଶବ୍ଦ ଶକ୍ତି" ଓ ଜ୍ଞାନ-ନିର୍ଣ୍ଣୟ କ୍ଷେତ୍ରରେ ଯେଉଁ ଆଭିମୁଖ୍ୟ ଦେଖା ଦେଇଛି, ସେଥିରେ ସବୁ ଜ୍ଞାନ-ରାଶିକୁ ନିୟନ୍ତ୍ରଣ କରିବା କ୍ଷେତ୍ରରେ "ରାଷ୍ଟ୍ର" ଅନବରତ ଚେଷ୍ଟା କରି ଆସିଛି ।

ଶାସ୍ତ୍ରୀୟ ଜ୍ଞାନର ପ୍ରତିପକ୍ଷ ଭାବରେ 'ସାଧାରଣ ଜ୍ଞାନ' (Common Sense), ସତ୍ୟ ଅନୁସନ୍ଧାନର ବ୍ୟାବହାରିକ ଅନୁଶୀଳନ, ବ୍ୟକ୍ତି ବା ନାରୀମାନଙ୍କ ସଂପର୍କରେ ଏ ସଂପର୍କରେ ବ୍ୟବହୃତ ଧାରଣା ସବୁ ଏବେ "ସଂସ୍କୃତି" ଜଗତରେ ବିତର୍କ ସୃଷ୍ଟି କରି ଚାଲିଛି । ତେଣୁ ସଂସ୍କୃତିର "ଅଭିଚର୍ଚ୍ଚା ବିଶାରଦମାନେ" "ବୀଜିକାଜ୍ଞାନ" (ଜିନିଓଲଜିର ପରିଭାଷା ଭାବରେ ଉପସ୍ଥାପନ କରାଯାଇଛି) ଦ୍ୱାରା କୌଣସି ନିର୍ଦ୍ଦିଷ୍ଟ "ପାଠ" (ଟେକ୍ସଟ) ଅନୁଶୀଳନ କରିବା ସଂପୂର୍ଣ୍ଣ ସମ୍ଭବ ନହେଲେ ମଧ୍ୟ, "ପାଠ" (ବା ଅଭିବ୍ୟକ୍ତିର ଲିପିକରଣ)ର "ଗଠନ କଳା" ଅନୁଧ୍ୟାନ କ୍ଷେତ୍ରରେ ଏହି "ପ୍ରତ୍ୟୟ"ର ଉପଯୋଗ କରିପାରିବେ । ଫଳରେ "ସାଂସ୍କୃତିକ ଆଲୋଚନା" କ୍ଷେତ୍ରରେ ଥିବା "ଉଚ୍ଚ/ନୀଚ", ପାଠୁଆ/ଅପାଠୁଆ, ଶାସ୍ତ୍ରୀୟ/ମୌଖିକ ଆଦି ଭେଦକୁ ପରିହାର କରିବା ଦିଗରେ ସହାୟକ ହେବ । ତେଣୁ ଏଠାରେ "ଜିନ୍"କୁ "ବୀଜ" (Seed, Root ବଂଶ ଆଦି) ସଂପର୍କୀୟ ଦୃଷ୍ଟିକୋଣରୁ "ବୀଜିକା" ଓ ତାର ବିଜ୍ଞାନକୁ "ବୀଜିକାଜ୍ଞାନ" ଭାବରେ "ଉଲ୍ଲେଖ" କରାଯାଉଛି । ମୋର ଜାଣିବାରେ ଗାନ୍ଧିଜୀ "ସାଂସ୍କୃତିକ ରାଷ୍ଟ୍ରୀୟତାବାଦ" (କଲଚରାଲ୍ ନ୍ୟାସନାଲିଜିମ୍) କ୍ଷେତ୍ରରେ ଏ ପ୍ରକାର ଆଲୋଚନା କରିଥିବାର ସୂଚନା ମିଳେ-ଯଦିଓ ସେ ସମୟରେ "ଜିନିଓଲଜି"ର ଏଭଳି ବ୍ୟାପକ ଚର୍ଚ୍ଚା ହୋଇନଥିଲା ।



# ବୌଦ୍ଧିକତା (Intellectuality)

ପ୍ରତ୍ୟେକ ସଂସ୍କୃତିରେ ଯେଉଁ 'ଶବ୍ଦ' ସବୁ ବ୍ୟବହାର କରାଯାଏ, ତାକୁ ଭିତ୍ତିକରି ସେହି ସଂସ୍କୃତିକୁ ବୁଝିବାକୁ କେତେଗୁଡ଼ିଏ 'ପ୍ରତ୍ୟୟ' ସୃଷ୍ଟି ହୋଇଥାଏ । କାଳକ୍ରମେ ଏହି ପ୍ରତ୍ୟୟ ମଧ୍ୟ ଏକ ତାତ୍ତ୍ୱିକତା ସୃଷ୍ଟିକରେ । ସେହି ତାତ୍ତ୍ୱିକତାକୁ ଭିତ୍ତିକରି ପ୍ରତ୍ୟୟର ଅର୍ଥ, ଅର୍ଥାନ୍ତର ଓ ଅର୍ଥ ସଂପ୍ରସାରଣ ଘଟିଥାଏ । ଏହାକୁ ଆଲୋଚକମାନେ ବିଚାରକୁ ନେଇ ଏହି ପ୍ରତ୍ୟୟକୁ ସଂସ୍କୃତିର ପରିବର୍ତ୍ତନଶୀଳତା ମଧ୍ୟରେ ଏକ ଗତିଧାରା ଭାବରେ ଚିହ୍ନିତ କରିଥାନ୍ତି । ଏଠାରେ ସେହି ଆଲୋଚନାର ଧର୍ମକୁ ଅବ୍ୟାହତ ରଖି ବୌଦ୍ଧିକତା କଣ ଓ ତାର ସାଂସ୍କୃତିକ ଗତିଶୀଳତା ଭିତରେ ଏହା କିପରି ନିର୍ଦ୍ଦିଷ୍ଟ ଗତି ସ୍ଥିର କରିସାରିଛି, ତାହାହିଁ ବିଚାର ବିଶ୍ଳେଷଣ କରିବାର ଆବଶ୍ୟକତା ଦେଖାଦେଇଛି । ଏହାଫଳରେ ସାହିତ୍ୟ, ସଂଗୀତ, ନୃତ୍ୟ ବା ଯେକୌଣସି କଳାତ୍ମକ ଅଭିବ୍ୟକ୍ତି କିପରି ସମୟକ୍ରମେ ଭିନ୍ନଧାରା ସୃଷ୍ଟି କରେ ତାହା ବୁଝିପାରିଲେ, ଲେଖକଟିଏ ବା କଳାକାର କାହିଁକି ଏପରି ପରିବର୍ତ୍ତନକୁ ସ୍ୱୀକାର ବା ଅସ୍ୱୀକାର କରେ ତାହା ଧରିପାରିବା ସମ୍ଭବ ହୁଏ ।

ବୌଦ୍ଧିକତା ସେହିଭଳି ଏକ ପ୍ରତ୍ୟୟ । ଆଧୁନିକତାର ଆଗମନ ବା ଆବିର୍ଭାବ ଫଳରେ ଏହି ପ୍ରତ୍ୟୟର ପ୍ରସାର ବିଭିନ୍ନ ସଂସ୍କୃତିରେ ବିଭିନ୍ନ ଭାବରେ ରୂପ ନେଇଥାଏ । ଏହାର ଦୁଇଟି ଧାରା ! (୧)ପାରମ୍ପରିକତା (୨) ଆଧୁନିକତା । କିନ୍ତୁ ଏବେ ଏକ ନୂତନ ସାଂସ୍କୃତିକ ରୂପ ପରିଗ୍ରହ କରିବାକୁ ଯାଉଛି, ଯାହାକୁ 'ଆଧୁନିକ ଉତ୍ତର କାଳ' ବୋଲି ସୂଚିତ କରାଯାଇପାରେ । ବୌଦ୍ଧିକ ପ୍ରତ୍ୟୟଟି ବିଂଶ ଶତାବ୍ଦିରେ ହିଁ ସୃଷ୍ଟ ଓ ଏହି ପ୍ରତ୍ୟୟକୁ ନେଇ ବିଂଶ ଶତାବ୍ଦିର ପୂର୍ବବର୍ତ୍ତୀ ଶତାବ୍ଦିମାନଙ୍କର ସାହିତ୍ୟ ଓ ସଂସ୍କୃତିର ଗତିଧାରାକୁ ନିରୂପଣ କରିବାର ପ୍ରୟୋଗାତ୍ମକ ଆଭିମୁଖ୍ୟ ମଧ୍ୟ ସ୍ପଷ୍ଟ ବାରି ହୋଇପଡ଼େ । ପାରମ୍ପରିକ ସମାଜ, ସଭ୍ୟତା, ସଂସ୍କୃତିରେ ଏହାର ଆବେଦନ, ଆଲୋଚନା ଓ ସମୀକ୍ଷାରେ କେବଳ ଦାର୍ଶନିକ, ନୀତିଧର୍ମ (Ethics) ଓ ନନ୍ଦନତତ୍ତ୍ୱକୁ ହିଁ ପ୍ରାଧାନ୍ୟ ଦେଇଥିଲା । ଭାରତରେ ଏହାର ଉଦାହରଣ, ବେଦ, ଉପନିଷଦ ପ୍ରଭୃତିର ପୁନର୍ମୂଲ୍ୟାୟନର ପ୍ରଚେଷ୍ଟା । ଏହି ପାରମ୍ପରିକତା କ୍ଷେତ୍ରରେ ହେତୁବାଦ ଓ ସତ୍ୟର ପ୍ରତିଷ୍ଠା ହିଁ ମୂଲ୍ୟାୟନର ଲକ୍ଷ୍ୟ ଥିଲା ।

ଆଧୁନିକ କାଳରେ (ଫରାସୀ ବିପ୍ଳବ ପରେ) ବୌଦ୍ଧିକତା କେବଳ ଦାର୍ଶନିକ, ନୀତିଧର୍ମ ଓ ନାନ୍ଦନିକତାକୁ ବିଚାରକୁ ନନେଇ ସାମାଜିକ ଓ ରାଜନୈତିକ ପରିବର୍ତ୍ତନକୁ

ମଧ୍ୟ ନିଜର ପରିସରଭୁକ୍ତ କଲା । ଏହାରି ଫଳରେ ସାଧାରଣ ଶ୍ରମିକ ଶ୍ରେଣୀ ଉପରେ କ୍ଷମତାଧୀଶମାନଙ୍କର ଅତ୍ୟାଚାର ମଧ୍ୟ ବୌଦ୍ଧିକ ଆଲୋଚନାର ଅନ୍ତର୍ଭୁକ୍ତ ହେଲା । ଏହାର ପଶ୍ଚାତ ଭାଗରେ ମାର୍କ୍ସୀୟ ଚିନ୍ତନର ପୁନର୍ମୂଲ୍ୟାୟନର ପ୍ରଚେଷ୍ଟା ହେଲା ଓ ଏ ଦିଗରେ ଅଗ୍ରଗାମୀ ନେତୃତ୍ୱ ନେଲେ ଆଣ୍ଟୋନିଓ ଗ୍ରାମ୍‌ସି । ଫଳରେ ସମୀକ୍ଷା କ୍ଷେତ୍ରରେ ନିର୍ଦ୍ଦିଷ୍ଟ 'ଶ୍ରେଣୀଭୁକ୍ତ ବୌଦ୍ଧିକତା' ପ୍ରତ୍ୟୟ ଆଲୋଡ଼ନ ସୃଷ୍ଟି କଲା । ଏହାକୁ ଅପ-ଆଧିପତ୍ୟ ଆଖ୍ୟାଦେଇ ଗ୍ରାମ୍‌ସି ଯୁକ୍ତିକଲେ ଯେ ଏହି ବୌଦ୍ଧିକତା ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପ୍ରତିନିଧିତ୍ୱ କରେ ।

ଏହାର ପ୍ରତିପକ୍ଷ ଭାବରେ ଅଣ-ମାର୍କ୍ସିଷ୍ଟ ଚିନ୍ତାଧାରାର ଉଦ୍‌ଗାତା ମାଇକେଲ ଫୁକୋ ଏହାକୁ ଶ୍ରେଣୀ ପ୍ରତିନିଧିତ୍ୱ କରୁଥିବା ବୌଦ୍ଧିକତା ବଦଳରେ ଏକ 'ବୃତ୍ତିଧାରୀ ବୌଦ୍ଧିକତା' ନାମରେ ବ୍ୟାଖ୍ୟା କଲେ । ଫଳରେ ସମାଜରେ ଯେଉଁ ବିଷୟ ଶୃଙ୍ଖଳା ସବୁ ଉଭା ହେଲା ପ୍ରତ୍ୟେକ କ୍ଷେତ୍ରରେ ତାହା ନୂତନ ବୌଦ୍ଧିକତାର ସୂତ୍ରପାତ କଲା - ଯେପରି ସମାଜ ବିଜ୍ଞାନ, ମନୋବିଜ୍ଞାନ, ରାଜନୀତି ବିଜ୍ଞାନ ବା ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ ଆଦି । ଏଗୁଡ଼ିକୁ ଆଉ ବିଷୟ କୁହା ନଯାଇ ଶୈକ୍ଷିକ ଶୃଙ୍ଖଳାରେ, ବୌଦ୍ଧିକତାର ରୂପ ଭାବରେ ଗ୍ରହଣ କରାଗଲା । ପାରମ୍ପରିକ ବୌଦ୍ଧିକତା ଭଳି ଏହା ଆଉ କେବଳ ଦାର୍ଶନିକ, ନୀତିଧର୍ମ ସମ୍ବଳିତ ଓ ନାନ୍ଦନିକତା ମଧ୍ୟରେ ସୀମାବଦ୍ଧ ରହିଲା ନାହିଁ । ଜ୍ଞାନ ରାଜ୍ୟରେ ଯେପରି ବିସ୍ଫୋରଣ ଘଟିଲା -ଅନୁରୂପ ଭାବରେ ବୌଦ୍ଧିକତା କ୍ଷେତ୍ର ମଧ୍ୟରେ ତାହାର ସଂପ୍ରସାରଣ ଘଟିଲା । ଫୁକୋ ଯୁକ୍ତି କଲେ ଯେ ଏହି ବୌଦ୍ଧିକତା ନିର୍ଦ୍ଦିଷ୍ଟ ବିଷୟବସ୍ତୁ, ସ୍ଥାନୀୟ (ବା ଆଞ୍ଚଳିକ) ଓ ଆନୁଷ୍ଠାନିକ ସଂଗ୍ରାମ କ୍ଷେତ୍ରରେ ମଧ୍ୟ ତାର କାୟା ବିସ୍ତାର କରିସାରିଛି ।

ଫୁକୋଙ୍କର ଏହି ଯୁକ୍ତିକୁ ଆଗେଇ ନେଲେ ଲିଟୋର୍ଡ଼ । ତାଙ୍କ ମତରେ ଏପରି ସଂପ୍ରସାରଣର କାରଣ ହେଉଛି, ଆଧୁନିକତାର ଅବକ୍ଷୟ ଓ ଶିକ୍ଷାନୁଷ୍ଠାନମାନଙ୍କରେ ଉତ୍କର୍ଷତାର ଅଭାବ । ତେଣୁ ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ଯେଉଁ ସଂପ୍ରସାରଣ ଘଟିଲା, ତା'ଫଳରେ ପ୍ରତ୍ୟେକ ଅନୁଷ୍ଠାନ, ଗୋଷ୍ଠୀ (ଜ୍ଞାନ ରାଜ୍ୟରେ) ମଧ୍ୟରେ ଏକ କର୍ତ୍ତୃତ୍ୱର ଅଭାବ ଉପଲବ୍ଧ ହେଲା । ତେଣୁ କ୍ଷୁଦ୍ର-ରାଜନୈତିକ ଆନୁଷ୍ଠାନିକତା ବହୁ ଗୁଣିତ ହେଲା ଓ ଏଥିରେ ଯେଉଁ ନୂତନ କର୍ତ୍ତୃତ୍ୱ ସୃଷ୍ଟିହେଲା, ତାହା ବୌଦ୍ଧିକତାର ବିସ୍ତାର ଘଟାଇଲା-ଏହା ଶାସ୍ତ୍ରଜ୍ଞାନକୁ ଏକମାତ୍ର ଆଦର୍ଶ ଭାବରେ ଗ୍ରହଣ ନକରି ସ୍ଥାନୀୟ ଜ୍ଞାନ, ଅନୁଭୂତ ବା ଅନୁଭବ ପ୍ରସୂତ ଜ୍ଞାନକୁ ମଧ୍ୟ ସ୍ୱୀକାର କରିନେଲା । ଗଣ ମାଧ୍ୟମର ପ୍ରସାର ଫଳରେ ଏହି ବୌଦ୍ଧିକତା ଏକ ନିର୍ଦ୍ଦେଶାତ୍ମକ ଭୂମିକା ଗ୍ରହଣ କଲା ଓ ଏହା ମଧ୍ୟ ପ୍ରୟୋଗବାଦୀ ସିଦ୍ଧାନ୍ତକୁ ସ୍ୱୀକାର କରିନେଲା ।

ଏହି ପ୍ରତ୍ୟୟଗତ ସ୍ୱଚ୍ଛତା ଭାରତର ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ କିପରି ପ୍ରତିଫଳିତ ଓ ଓଡ଼ିଶାରେ କିପରି ରୂପ ପରିଗ୍ରହ କରିଛି, ତାହାର ଆଲୋଚନା ପାଇଁ ସାହିତ୍ୟ ସମୀକ୍ଷକମାନେ ଓ ପାରିଭାଷିକ ବିଜ୍ଞାନୀମାନେ ଅଧିକ ଧ୍ୟାନ ଦେବା ଆବଶ୍ୟକ । ଫଳରେ ଆମେ ବୌଦ୍ଧିକତା କହିଲେ କ'ଣ ବୁଝୁଛୁ ଓ ତାହା କିପରି ସମୟାନୁସାରେ ଆମର ଚିନ୍ତନ କ୍ଷେତ୍ରକୁ ଆନ୍ଦୋଳିତ କରି ଆସିଛି, ତାର ଗତିଧାରା ନିରୂପଣ କରାଯାଇ ପାରିବ ।

ମୋର ଅଧ୍ୟୟନ ଓ ଅନୁଭବର ଆଧାରରେ ଏବେ ଖାଲି ଏକ ପ୍ରାରମ୍ଭିକ ଉପପାଦ୍ୟ ଭାବରେ ମୁଁ ମୋହନଦାସ କରମଚାନ୍ଦ ଗାନ୍ଧିଙ୍କୁ ହିଁ ବୌଦ୍ଧିକତାର ପ୍ରତ୍ୟୟଗତ ସମୀକ୍ଷା କ୍ଷେତ୍ରରେ ଅଗ୍ରଗାମୀ ଚିନ୍ତକ ଭାବରେ ଗ୍ରହଣ କରିବାକୁ ଆହ୍ୱାନ ଦେଉଛି । ଏହାର ପ୍ରତିପକ୍ଷ ଯୁକ୍ତି ଭାବରେ ଭାରତରେ ବା ଓଡ଼ିଶାରେ ସଂସ୍କୃତି ସଚେତନ, ଭାଷାବିଚାର ଓ ରାଷ୍ଟ୍ରୀୟତାବାଦର ପରିପ୍ରେକ୍ଷୀରେ କୌଣସି ଲେଖକ ଉଭା ହୋଇଥିବାର ମୋର ଦୃଷ୍ଟିଗୋଚର ହୋଇନାହିଁ । ଅନୁକରଣ ବିଦ୍ୟାରେ ବୌଦ୍ଧିକତାର ବିଚାର କରିବାର ସମୟ ଅତିକ୍ରାନ୍ତ । ବରଂ ବିଶ୍ୱରେ ଯେଉଁ ଜ୍ଞାନରାଶିର ବିସ୍ଫୋରଣ ଘଟୁଛି, ସେହି ପରିପ୍ରେକ୍ଷୀରେ ଅନୁକରଣ ବଦଳରେ ତାକୁ ଆତ୍ମସ୍ଥ କରିବାର ସମ୍ଭାବନା ସୃଷ୍ଟି ହୋଇଛି । କାରଣ ଆମେ ଏବେ ଏକ ମୁକ୍ତ ସମାଜରେ ବାସ କରିବାର ସୁଯୋଗ ପାଇ ସାରିଛୁ । ତେଣୁ ଏହି ସାଂସ୍କୃତିକ ପ୍ରତ୍ୟୟଟିକୁ ସମକାଳିକ ଚର୍ଚ୍ଚା କ୍ଷେତ୍ରରେ ବୁଝିବାକୁ ହେଲେ ଆମକୁ ସଂସ୍କୃତିରେ 'ମଧ୍ୟମ-ଶ୍ରେଣୀ' ବେପାରୀ, ସମାଜପତି, ଆଧିପତ୍ୟ, ବହୁ ସଂସ୍କୃତିବାଦ ଭଳି ଏବର ଚର୍ଚ୍ଚାରେ ପ୍ରାଧାନ୍ୟ ଲାଭ କରିଥିବା ପ୍ରତ୍ୟୟଗୁଡ଼ିକୁ ମଧ୍ୟ ଅନୁଧ୍ୟାନ କରିବାକୁ ହେବ । ଏ ଦିଗରେ ଓଡ଼ିଆ ସାହିତ୍ୟର ଚର୍ଚ୍ଚା କ୍ଷେତ୍ରରେ ବିଶେଷ ଆଲୋଡ଼ନ ସୃଷ୍ଟି ହୋଇପାରି ନାହିଁ । କାରଣ ଆମେ ଏବେ ବି 'ଆଧୁନିକ ଉତ୍ତର ତ' ଦୂରର କଥା ଆଧୁନିକତାକୁ ମଧ୍ୟ ବିଶ୍ଳେଷଣର ପରିଧି ଭିତରକୁ ଆଣିପାରି ନାହୁଁ । ବରଂ ଆମେ କେବଳ ଏକ ମିଶ୍ର-ଜଗତରେ ରହି ଅହମିକା-ଗ୍ରସ୍ତ ହୋଇପଡ଼ିଛୁ । ଏହାଛଡ଼ା ନିରପେକ୍ଷ ଚର୍ଚ୍ଚାର ମାର୍ଗ ବି ଐତିହାସିକତାର ପୃଷ୍ଠଭୂମିକୁ ତ୍ୟାଗ କରିପାରି ନାହିଁ । ବିଭିନ୍ନ ଶୈକ୍ଷିକ ଶୃଙ୍ଖଳାରୁ ଶିକ୍ଷା ଗ୍ରହଣ କରିବାକୁ ସାହିତ୍ୟର ଅଭିଚର୍ଚ୍ଚା ବିଶାରଦମାନେ ଆଗଭର ହେଉନାହାଁନ୍ତି । ଆମର ଅତୀତ ପ୍ରୀତି ପ୍ରତି ଥିବା ମୋହ ତ୍ୟାଗ କରିପାରୁନାହୁଁ ।



# ବ୍ୟକ୍ତିକ ନେତୃତ୍ୱ
# (Personal Leadership)

ଦୁଃଖର ଓ ହତାଶାର ବଳୟ ଭିତରେ ରହି ଆମେ ଏବେ 'ନେତୃତ୍ୱ' କଣ ବୁଝୁଛୁ । ସେ କଥା ନେଇ 'ବିତର୍କର ଆବଶ୍ୟକତା ମଧ୍ୟ ରହିଛି । ଏପରିକି 'ଜ୍ଞାନର ବିସ୍ଫୋରଣ' ଯୁଗରେ କ୍ରମଶଃ 'ମାନବିକତା'ର ପରିଧି ସଂକୁଚିତ ହେଉଛି । 'ଭୟ' ଓ 'ଅଭିବୃଦ୍ଧି'ର ଦୁଇ ବିନ୍ଦୁ ଭିତରେ ଯେଉଁ ସରଳରୈଖିକ ମାନଦଣ୍ଡ ତିଆରି ହୋଇସାରିଛି ଓ ସେସବୁର ଊର୍ଦ୍ଧ୍ୱକୁ ଯିବାକୁ ହେଲେ ''ଆତ୍ମିକ ବିକାଶ''ର ଧାରାକୁ ସମ୍ପୂର୍ଣ୍ଣ ଭୁଲିଯିବା ସମ୍ଭବ ନୁହେଁ । ପିଲାବେଳର ଭୁଲଭ୍ରାନ୍ତି, ଦୁଃଖଶୋକ, ଆନନ୍ଦ ବା ହସଖୁସିର ଦୁନିଆଁ ଫେରି ଆସୁ, ଏ ପାଇଁ ମଧ୍ୟ ରାସ୍ତା ଖୋଜା ଚାଲିଛି ।

ଭାରତରେ ବା ଓଡ଼ିଶାରେ ଏ ଦୁନିଆଁର ରୂପରେଖ ଜାଣିବା ପାଇଁ ଆମ ଭିତରେ ଉନ୍ମାଦନା ଓ ଭାବର ଉଚ୍ଚାଟ ଘଟୁନାହିଁ । ଆମେ ଶାନ୍ତିର ପଥ ଖୋଜିବାକୁ ଯାଇ ଶାନ୍ତିକୁ ନିଜ ଅନ୍ତରରୁ ନିର୍ବାସିତ କରି ଚାଲିଛୁ । ଅସଂଖ୍ୟ ପ୍ରବଚନ, ବାଣୀ, (ଅତୀତର ଓ ଏବର) ଆମର କର୍ଣ୍ଣକୁହରକୁ ରସାଣିତ କରୁଥିଲେ ବି ସାହିତ୍ୟରେ, ରାଜନୀତିରେ, ସମାଜ, ଦର୍ଶନରେ, ପରିଚାଳନା ବିଜ୍ଞାନରେ କେବଳ 'ମୁଖସ୍ଥ ବିଦ୍ୟା'' ଆମ ଭିତରେ ଏତେ ଜୋରରେ ପ୍ରବେଶାଧିକାର ହାସଲ କରି ସାରିଛନ୍ତି ଯେ ''ଇତିହାସ''ର ଗତି ପ୍ରବାହ ଭିତରେ ଏହି ଆବହାଓ୍ୱା ତଥା ''ନେତୃତ୍ୱ''ର ଧାରା ବି ଧରା ପଡୁନାହିଁ । ''ଗଣତନ୍ତ୍ର''ର ଭୋଗବାଦରେ ଆମେ ଏତେ ବିହ୍ୱଳିତ ହୋଇ ପଡୁଛୁ ଯେ ''କ୍ଷମତା''ର ଅନ୍ଧ ପ୍ରମତ୍ତତା ଭିତରେ ଆମର ମାନବୀୟ ମୂଲ୍ୟବୋଧ ଏପରି ଚାପା ପଡ଼ିଯାଉଛି ଯେ ତା'କୁ ବାଟରେ ପକାଇବାକୁ ମାନବୀୟ ବିଦ୍ୟା ଓ ସାମାଜିକ ବିଜ୍ଞାନ ସମୂହ ଭିତରେ ସମନ୍ୱୟ ସ୍ଥାପିତ ହୋଇପାରୁନାହିଁ ।

ଏଇଭଳି ଘଟଣା କେବଳ ଓଡ଼ିଶାରେ ବା ଭାରତରେ ନୁହେଁ, ସମଗ୍ର ପୃଥିବୀରେ ଊଣା ଅଧିକେ ଦେଖାଦେଇଛି । ସେହି ପରିବେଶରେ, ପରିବେଷ୍ଟନୀରେ ଆମକୁ ଏବେ ବି ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କୁ ବୁଝିବା ଓ ତାଙ୍କର ଜୀବନରୁ ଓ ସମୟର ପରିଧି ଭିତରୁ ତାଙ୍କର ସୁଦୂର ପ୍ରସାରୀ ''ଦୃଷ୍ଟିଭଙ୍ଗୀ''କୁ ଉନ୍ମୋଚନ କରିବାକୁ ଆଗ୍ରହ ଦେଖାଯାଉନାହିଁ । ବେଳେ ବେଳେ ମନେ ହେଉଛି ଏହା ଆମର ଜ୍ଞାନର ଔଦ୍ଧତ୍ୟ କିମ୍ବା ଅର୍ଥଶକ୍ତିର ଅହମିକା ।

ଗାନ୍ଧୀଙ୍କ ମୃତ୍ୟୁ ବେଳକୁ ତାଙ୍କର ଯେଉଁ ବ୍ୟକ୍ତିଗତ ସମ୍ପତ୍ତି ଥିଲା, ତାହା ହିସାବ କରି ଦେଖିଲେ ବୋଧହୁଏ ଆଜିର ଦରଦାମ୍ ଯୁଗରେ ଟ୧୦୦/-ରୁ ଉର୍ଦ୍ଧ୍ୱ ହେବନାହିଁ ।

ସେ କାହିଁକି ଓ କିପରି ଜନମାନସକୁ ପ୍ରଭାବିତ କରି ପାରୁଥିଲେ ଓ ତା'ର କାରଣ ଗୁଡ଼ିକ ସମ୍ପର୍କରେ ଯେଉଁ ଚର୍ଚ୍ଚା ବଢ଼ି ଚାଲିଛି-ଭାରତ ବାହାରେ, ତାହା ଷ୍ଟିଫେନଙ୍କ ପରିଚାଳନା ବିଦ୍ୟା ଜରିଆରେ ହେଉ ବା ଓବାମାଙ୍କର ରାଜନୀତିରେ ହେଉ ସେ ସବୁକୁ ଯୁବକ ଯୁବତୀମାନେ ବୁଝିବାକୁ ଚେଷ୍ଟା କରୁନାହାନ୍ତି —ଏପରି ବି କୁହାଯାଇ ପାରିବ ନାହିଁ । କିଂତୁ ସେମାନଙ୍କୁ ସେ 'ସୁଯୋଗ' ଦେବାକୁ ଆମେ ସମସ୍ତେ, ପରିବାର, ଶିକ୍ଷାନୁଷ୍ଠାନ, ପ୍ରଶାସନ, ପ୍ରୋତ୍ସାହନ ଦେବାତ ଦୂରର କଥା, ସେମାନଙ୍କ କଥା, ବ୍ୟଥା, କୋହ, ଦୁଃଖ, ଦୈନ୍ୟକୁ ବିଶ୍ଳେଷଣ କରି ତାଙ୍କ ଆଗରେ ''ଗାନ୍ଧୀଙ୍କ ଚିନ୍ତନ''କୁ ଥୋଇବା ପାଇଁ ଆମର ଆଗ୍ରହ ବି କ୍ରମଶଃ ଊଣା ହେଉଛି । ଆମ ସମାଜ ଯେଉଁ ଭାବମୂର୍ତ୍ତୀ ତିଆରି କରୁଛି, ତା ସତ୍ୱେ ବି ଆମ ଜୀବନରେ ''ମାନବୀୟ ଗୁଣାବଳୀ'' ଲୋପ ପାଇପାରୁନାହିଁ । ''ଭୟରୁ'' ହେଉ ବା ଶରଣାପନ୍ନ ହେବାର ଆକାଂକ୍ଷାରୁ ହେଉ, ଅସଂଖ୍ୟ ମନ୍ଦିର ଓ ଗୁଜବ ସୃଷ୍ଟି ହେଉଛି, କିନ୍ତୁ 'ତଳୁ ଉପରକୁ' ଉଠିବାର ପ୍ରୟାସ ବଦଳରେ 'ଉପରୁ ତଳକୁ' ଆମ ଜ୍ଞାନଗରିମା, ଚିନ୍ତନକୁ ଚାପି ଦେବାର ଔଦ୍ଧତ୍ୟ ଏତେ ପ୍ରବଳ ଯେ ସେଥିରେ ''ଦୁର୍ବଳ ଲୋକଟି''ର ବିବେକ ବୁଦ୍ଧି, ଅନୁଭବ, ଆଦିକୁ ବି ଚାପିଦିଆ ଯାଉଛି ।

ଏବେ ମନେ ହେଉଛି ଯେ ''ନେତୃତ୍ୱ'' ଯେପରି ତିଆରି ହୋଇପାରୁନାହିଁ, ସେହିପରି ପ୍ରତ୍ୟେକ ବ୍ୟକ୍ତି ଭିତରେ ଯେଉଁ ନେତୃତ୍ୱର ଉପାଦାନ ରହିଛି, ତାହା ମଧ୍ୟ ଆମେ କଳନା କରିବାକୁ ଚେଷ୍ଟା କରୁନୁ ।

ଏ ଦୀର୍ଘ 'ଅବତରଣିକତା' ବା ଭୂମିକା କାହିଁକି ଲେଖିବା ଆବଶ୍ୟକ ମନେକଲି । ଏହାର ଏକମାତ୍ର କାରଣ ନିକଟରେ ଆନନ୍ଦ କୁମାର ସ୍ୱାମୀଙ୍କର ଇଂରାଜୀରେ ଲିଖିତ ବହି 'ଗାନ୍ଧୀ ଅନ୍ ପରସନାଲ୍ ଲିଡ଼ରସିପ୍' ବହିଟି ପଢୁଥିଲି । ସେ ବହିଟି ୨୦୦୬ ରୁ ୨୦୦୭ ଭିତରେ ତିନିଥର ଛପା ସରିଲାଣି - ସେଥିରେ ସେ ୪୦ଟି କ୍ଷୁଦ୍ର ପ୍ରବନ୍ଧ ଆଲୋଚନାରେ ଗାନ୍ଧୀଙ୍କର ଚିନ୍ତନକୁ ବିଶ୍ଳେଷଣ କରି ଏହି ''ବ୍ୟକ୍ତିକ ନେତୃତ୍ୱ'' ପ୍ରତ୍ୟୟଟି ଆବିଷ୍କାର କରିବାକୁ ସଚେଷ୍ଟ ହୋଇଛନ୍ତି । ମନେ ହେଉଛି ଆଜିର ଯୁବକଯୁବତୀ ମାନେ ଯଦି ଗାନ୍ଧୀଙ୍କ ସଂପର୍କରେ ଅଗଣିତ ପୁସ୍ତକ ମଧ୍ୟରୁ ଏହି ବହିରୁ ତାଙ୍କର ବିଦ୍ୟାର ଅୟଆରମ୍ଭ କରିପାରନ୍ତେ, ଅନେକ ସମସ୍ୟାର ସମାଧାନ ହୋଇପାରନ୍ତା । ନିର୍ବିବାଦରେ କୁହାଯାଇ ପାରିବ ଯେ ଏ ବହିଟି ପ୍ରଶାସନର କର୍ମଚାରୀମାନେ ପ୍ରଥମେ ପଢ଼ିବା ଆବଶ୍ୟକ ଓ ଏହାର ଓଡ଼ିଆ ଅନୁବାଦ ଅବଶ୍ୟ କାମ୍ୟ ।



# ମାନବବାଦ (Humanism)

ଏହା ଏକ ଦାର୍ଶନିକ ଜିଜ୍ଞାସାରୁ ସୃଷ୍ଟ ପ୍ରତ୍ୟୟ ବା concept ମାତ୍ର । ଏଥିରେ ମଣିଷ ହିଁ ବିଷୟବସ୍ତୁ ଓ ଜଗତର କେନ୍ଦ୍ରବିନ୍ଦୁ । ଅର୍ଥବ୍ୟାପ୍ତି ପାଇଁ ବା କର୍ମଯୋଜନା ପାଇଁ ଏହି 'ମଣିଷ'ର ଅନ୍ତରାତ୍ମାକୁ ଅନ୍ୱେଷଣ କରିବା ଓ ତାହାକୁ ପ୍ରାଧାନ୍ୟ ଦେବା ହିଁ ସାଂସ୍କୃତିକ ତାତ୍ତ୍ୱିକତାରେ ଏକ ପ୍ରଧାନ ଆୟୁଧ । ଏହା ଅଭ୍ୟୁତ୍‌ଥାନବାଦୀ ସାହିତ୍ୟ ସହିତ ଜଡ଼ିତ । ଊନବିଂଶ ଓ ବିଂଶ ଶତାବ୍ଦୀରେ ଏହି 'ପ୍ରତ୍ୟୟ'କୁ ପ୍ରାଧାନ୍ୟ ଦିଆଯାଇଥିଲା ଓ ଏଇଥିରୁ ହିଁ ''ଧର୍ମ-ନିରପେକ୍ଷ'' (Secular) ମାନବବାଦର ଜନ୍ମ । ଏଠାରେ ସାକାର 'ଈଶ୍ୱର'ଙ୍କର ଅସ୍ତିତ୍ୱକୁ ସ୍ୱୀକାର କରାଯାଇ ନଥାଏ । ଏହାର ଅନ୍ତରାଳରେ 'କାର୍ଯ୍ୟକାରଣ' ସଂପର୍କର ଅନୁଧ୍ୟାନ, 'ସାଂସ୍କୃତିକ ଅଭିଚର୍ଚ୍ଚା' (Cultural Discourse)ରେ 'ବିଶ୍ୱ'ର କଳ୍ପନାକ୍ଷେତ୍ରରେ ବିଶେଷ ଭୂମିକା ନେଇ ଆସିଛି । ଦେକର୍ଟ (Descartes) ଏହି ତାତ୍ତ୍ୱିକତାକୁ ''ମୁଁ ଭାବେ, ତେଣୁ ମୁଁ ଅଛି'' ଭାବରେ ନାମିତ କରି ଯାଇଛନ୍ତି । ମଣିଷର ଭାବନା ଓ ତା'ର ସ୍ଥିତି, ଏହି ପ୍ରତ୍ୟୟରେ ରୂପ ପରିଗ୍ରହ କରିଛି । 'ଶିଳ୍ପ ସମାଜ'ର ମଧ୍ୟବର୍ତ୍ତୀକାଳରେ ଏହି ଭାବଧାରାର ସଂପ୍ରସାରଣ ଘଟିଥିଲା । ଏଇଥିରୁ ''ମୁଁ ଯାହା ଚାହେଁ, ତାହା ମୁଁ ହୋଇପାରିବି'' ଧାରଣା କ୍ରମଶଃ ବଳବତ୍ତର ହେଲା । 'ବ୍ୟକ୍ତିଗତ ମାନବୀୟ ସଚେତନତା' ଓ ତଦ୍‌ଜନିତ ମଣିଷର ବ୍ୟକ୍ତିଗତ ସତ୍ତା ଓ 'ଅସ୍ମିତା' ଜାତ ହେଲା । ତେଣୁ ସାହିତ୍ୟରେ, ଚାରୁକଳାରେ, ସଂଗୀତରେ, ଅଭିନୟରେ, ମୋଟାମୋଟି ଭାବରେ 'ସାଂସ୍କୃତିକ ତାତ୍ତ୍ୱିକତା'ରେ ବ୍ୟକ୍ତିବାଦ ଓ ଶ୍ରେଣୀ ସ୍ୱାର୍ଥର ସମନ୍ୱୟରେ 'ଉଦାରବାଦୀ ମାନବବାଦ'ର ଧାରଣା ବଳବତ୍ତର ହେଲା । ତେଣୁ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ ସାହିତ୍ୟ ସଂସ୍କୃତିରେ ତାତ୍ତ୍ୱିକତାର (theoretical) ଆଲୋଚନା ସୃଷ୍ଟି ହେଲା, ସେଥିରେ ହିଁ 'ଉଦାରବାଦୀ ମାନବବାଦ'ର ସ୍ୱର ଗଭୀର ହେଲା । ଏହା ଫଳରେ ଲେଖକ-ଗ୍ରନ୍ଥକାରର 'ସତ୍ତା' ଅଧିକ ଦୃଢ଼ୀଭୂତ ହେଲା । ପରବର୍ତ୍ତୀ କାଳରେ ଏହା Patent Right ଓ Copy Right ଭଳି ଲେଖକୀୟ ସଂପତ୍ତିର ଆଇନଗତ ରୂପ ନେଲା । 'ଜ୍ଞାନ ଓ କ୍ଷମତା'

ପରସ୍ପର ସହିତ ଘନିଷ୍ଠ ଭାବରେ ସଂପୃକ୍ତ ହୋଇ ପଡ଼ିଲେ । ମୋଟାମୋଟି ଭାବରେ ଏବେ ଏହି 'ଜ୍ଞାନ ହିଁ କ୍ଷମତା' ଚିନ୍ତନ ସେହି ଭାବଧାରରେ କ୍ରମ ସଂପ୍ରସାରଣ । ଲେଖକ ଏକ ବ୍ୟକ୍ତି ଓ ତାହାର ବ୍ୟକ୍ତିତ୍ୱ ଏହି ଜ୍ଞାନ ଓ ପ୍ରକାଶ କରିବାର କ୍ଷମତା ଉପରେ ପ୍ରତିଷ୍ଠିତ । ଅନ୍ୟ ଦୃଷ୍ଟିରୁ ଦେଖିଲେ 'ନିଃସଙ୍ଗତା' (alienation) ଭଳି ମାର୍କ୍ସୀୟ ତତ୍ତ୍ୱ ଓ 'ବ୍ୟକ୍ତିର ଲକ୍ଷ୍ୟ' ସହିତ ସାମାଜିକ ଜୀବନରେ ଏହାର ଉତ୍ତରଣକୁ, ପୁଂଜିବାଦୀ ଅର୍ଥନୀତିର 'ସଂଯୋଗ ସୂତ୍ର' ଆତ୍ମସାତ୍ କରିନେଲା । ଅନ୍ୟ ଭାଷାରେ କହିଲେ ଏହା ଲେଖକୀୟ ସତ୍ତା ଓ ତାର କ୍ଷମତାକୁ ଅଗ୍ରାଧିକାର ଦେଇ ମାର୍କ୍ସୀୟ ଦର୍ଶନକୁ ସୁଚତୁର ଭାବରେ ଗ୍ରାସ କରିନେଲା । ଇତିହାସର ନାଟ୍ୟଭୂମିରେ ଓ ମାର୍କ୍ସବାଦରେ 'ମଣିଷର ଲେଖକତ୍ୱ' ଓ 'ବ୍ୟକ୍ତିତ୍ୱର ଅଭିନୟ'କୁ ଦୂର କରି ଏହାକୁ ଏକ ସ୍ୱତନ୍ତ୍ର ତାତ୍ତ୍ୱିକତା ପ୍ରଦାନ କରିବାକୁ ପୁଂଜିବାଦୀ ଅର୍ଥନୀତି ଆଗଭର । ତେଣୁ ଏହାର ପ୍ରତିପକ୍ଷ ଭାବରେ ଆଲଷ୍ଟର ପ୍ରଭୃତି ଲେଖକମାନେ ମାର୍କ୍ସଙ୍କର ପ୍ରାରମ୍ଭିକ ରଚନାଠାରୁ 'ଦାସ୍ କ୍ୟାପିଟାଲ'କୁ ଅଧିକ ଗୁରୁତ୍ୱ ଦେଲେ । ଏ ସବୁ ସତ୍ତ୍ୱେ 'ବଣିକ ଅର୍ଥନୀତି'ରେ 'ଉଦାରବାଦୀ ମାନବବାଦ' ତା'ର ସ୍ୱତନ୍ତ୍ର ସ୍ଥିତି ଜାହିର କଲା । ଏଥିରେ 'ବ୍ୟକ୍ତି ଓ ତା'ର ଚିନ୍ତନ'ର ପ୍ରସାରଣ କ୍ଷମତା ମଧ୍ୟ ଅଧିକ ସୁଯୋଗ ପାଇଲା । ଫଳରେ ରାଷ୍ଟ୍ରୀୟ/ସାମାଜିକ କର୍ତ୍ତୃତ୍ୱରୁ 'ମାନବବାଦ' ମୁକ୍ତିଲାଭ କଲା । ଏହି ପରିପ୍ରେକ୍ଷୀରେ ଗାନ୍ଧିଜୀଙ୍କର ଚିନ୍ତନରେ ମାନବବାଦ ସହିତ ଧର୍ମଧାରଣା(ସତ୍ୟ ହିଁ ଭଗବାନ), ଭାରତର ଚିନ୍ତନ କ୍ଷେତ୍ରରେ ଉପାଦନ ଯୋଗାଇଲା । ଏଠାରେ 'ବ୍ରହ୍ମ ସତ୍ୟ, ଜଗତ ମିଥ୍ୟା', 'ସତ୍ୟ' ହିଁ ବ୍ରହ୍ମ ଓ 'ବ୍ରହ୍ମ'ର ସ୍ଥାନକୁ ବ୍ୟକ୍ତିର 'ଅନ୍ତରାତ୍ମା' ସହିତ ଯୋଡ଼ି ଦିଆଗଲା । ମୁଖ୍ୟତଃ ଗାନ୍ଧିଜୀଙ୍କର ଚିନ୍ତନ ଉପନିଷଦୀୟ 'ଚିନ୍ତନ'ର ପ୍ରତିଫଳନ ଓ ତାହା ଭାରତୀୟ ଲେଖକଙ୍କୁ ଆକୃଷ୍ଟ କଲା । ଏହି ବିଚାରରେ 'ଭଗବାନ୍' – ନିରାକାର ଓ ପ୍ରତ୍ୟେକ ବ୍ୟକ୍ତିକୁ 'ସୋଽହଂ' ଚିନ୍ତନର ପରିପ୍ରକାଶ ଭାବରେ ଗ୍ରହଣ କରି, ସେହି ଧାରାରେ ସାମାଜିକ ଜୀବନକୁ ଓ ଆଧୁନିକ ସମାଜ ବ୍ୟବସ୍ଥାକୁ ପ୍ରାଧାନ୍ୟ ଦେବାକୁ ଲେଖକମାନେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଚେଷ୍ଟା କରିଚାଲିଲେ । ବ୍ୟକ୍ତି, ଲେଖକ, ନାଟ୍ୟକାର, କଳାକାର, ସଂସ୍କୃତିଚେତନ ନାରୀ/ ପୁରୁଷ ସମସ୍ତଙ୍କୁ 'ଆତ୍ମସମୀକ୍ଷା ବଳରେ ସମାଜ ଜୀବନକୁ ଉନ୍ନତ କରିବାକୁ ଆହ୍ୱାନ

ଦିଆଗଲା । ସେଥିପାଇଁ ଗାନ୍ଧିଜୀ କହିଲେ, ''ମୁଁ ପୁଞ୍ଜିବାଦୀମାନଙ୍କୁ ଘୃଣା କରେନାହିଁ, କିନ୍ତୁ 'ପୁଂଜିବାଦୀ ବ୍ୟବସ୍ଥା'କୁ ଦୂର କରିବାକୁ ଚାହେଁ । ସ୍ୱୀକାର କରିବାକୁ ହେବ ଯେ ଗାନ୍ଧିଜୀଙ୍କୁ ଜଣେ 'ମୁକ୍ତ ଲେଖକ' ଭାବରେ ବିଚାର କରିବାର ପ୍ରଚେଷ୍ଟା ଏବେ ମଧ୍ୟ ଆରମ୍ଭ ହୋଇନାହିଁ ।

ଏକବିଂଶ ଶତାବ୍ଦୀରେ 'ବ୍ୟକ୍ତିବାଦ' ପାଇଁ ଯେତିକି ସୁଯୋଗ ସୃଷ୍ଟି ହୋଇଛି, ତାହା ଅପେକ୍ଷା ବିପଦ କମ୍ ନାହିଁ । ହାବରମାସ୍, ଗ୍ରାମସି, ନରସ୍‌ଙ୍କ ଭଳି ଏହି ପ୍ରସିଦ୍ଧ ଲେଖକମାନେ ମଧ୍ୟ 'ମାନବବାଦୀ' ପରଂପରା'ରେ ଥିବା ଯୁକ୍ତିନିଷ୍ଠତା ଓ ସତ୍ୟର ଅନୁସନ୍ଧାନକୁ ଅସ୍ୱୀକାର କରିନାହାନ୍ତି । ସେହି ପରିପ୍ରେକ୍ଷୀରେ Ethics (ଗାନ୍ଧିଜୀଙ୍କ ପରିଭାଷାରେ 'ନୀତିଧର୍ମ') ଓ ରାଜନୀତିକୁ ସମୀକ୍ଷା କଲାବେଳେ ଉପନ୍ୟାସ, ନବନ୍ୟାସ (Fiction), କଳା, ସ୍ଥାପତ୍ୟରୁ ଉପାଦାନ ସଂଗ୍ରହ କରି 'ସଂସ୍କୃତିର ତାତ୍ତ୍ୱିକତା'ର ସେହି 'ମାନବବାଦୀ' ପରଂପରାକୁ ଦୃଢ଼ୀଭୂତ କରିବାର ସନ୍ଧିକ୍ଷଣରେ ଆସି ପହଞ୍ଚିଯାଇଛୁ । ଜଗତୀକରଣ ପ୍ରକ୍ରିୟାରେ, ବଣିକ ଅର୍ଥନୀତିରେ 'ମାନବବାଦୀ' ପରଂପରାର ଭବିଷ୍ୟତ ବିଷୟରେ ଚିନ୍ତା କରିବାର ସମୟ ଉପନୀତ । ଏହି ପରିପ୍ରେକ୍ଷୀରେ ଓଡ଼ିଶାରେ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ (ଓଡ଼ିଶାରେ) ଯେଉଁମାନଙ୍କୁ 'ମାନବବାଦୀ' ଚିନ୍ତନର ସ୍ରଷ୍ଟା ବୋଲି ବିଚାର କରାଯାଉଛି, ସେମାନଙ୍କର ରଚନାକୁ ସେହିଭଳି ଗଭୀର ଭାବରେ ଅନୁଶୀଳନ କରି ତା'ରି ବ୍ୟାଖ୍ୟା କରିଆରେ 'ବୌଦ୍ଧିକ ଅଭିଚର୍ଚ୍ଚା' (Intellectual discourse) କ୍ଷେତ୍ରରେ ନୂତନ ଦିଗନ୍ତ ଆବିଷ୍କାର କରିବାର ଆବଶ୍ୟକତା ରହିଛି ।



# ମୌଖିକତା (Orality)

ଏବେ ଗୋଟିଏ ଆଲୋଚନା ଗୋଷ୍ଠୀରେ ଜଣେ ପ୍ରାବନ୍ଧିକ ତାଙ୍କ ସ୍ୱକୀୟ ବକ୍ତବ୍ୟରେ ଉପସ୍ଥାପନ କଲେ ଯେ ଓଡ଼ିଶାରେ ଆଧୁନିକ କାଳରେ ଚାରିଜଣ ବ୍ୟକ୍ତି ''ସାଂସ୍କୃତିକ ଅଭିଚର୍ଚ୍ଚା'' (ବା ତାଙ୍କ ବିଚାରରେ ''ବିମର୍ଶ'') କ୍ଷେତ୍ରରେ ''ବିମର୍ଶ-ନିର୍ମାତା'' । ଏ ଚାରିଜଣ ହେଲେ : ଗୋପବନ୍ଧୁ ଦାସ, ମଧୁସୂଦନ ଦାସ, ନୀଳକଣ୍ଠ ଦାସ ଓ ଚିତ୍ତରଂଜନ ଦାସ । କିନ୍ତୁ ଏ ଚାରିଜଣ କିପରି ''ବିମର୍ଶ-ନିର୍ମାତା'' ଭାବରେ ସ୍ୱୀକୃତି ପାଇବା କଥା ସେ ସଂପର୍କରେ କୌଣସି ତଥ୍ୟ ଓ ପ୍ରମାଣ ଉପସ୍ଥାପିତ କରି ନାହାନ୍ତି (ଏ ପର୍ଯ୍ୟନ୍ତ ମୋ ଜାଣିବାରେ) ଏ ଉକ୍ତି ଥିଲା ତାଙ୍କର ''ମୌଖିକ'' ଉପସ୍ଥାପନ । କୌଣସି ବିଷୟବସ୍ତୁ ଉପରେ ''ମୌଖିକ ଉପସ୍ଥାପନ''ଜରିଆରେ ମତବ୍ୟକ୍ତ କରିବା ଜଟିଳ ବ୍ୟାପାର । କିନ୍ତୁ ଏ କଥା ମଧ୍ୟ ସତ୍ୟ ଯେ 'ପରିଭାଷା' କ୍ଷେତ୍ରରେ (Orality) ''ମୌଖିକତା'' ସ୍ୱୀକୃତି ପାଇଛି । ତେବେ ଏ ''ମୌଖିକତା'' କ'ଣ ? ଭାରତ ପ୍ରାଚୀନ ସଂସ୍କୃତିର ପ୍ରତ୍ୟୟରେ ଏହାକୁ ''ଶ୍ରୀମୁଖ ନିସୃତ ବାଣୀ'' ଭାବରେ ଗ୍ରହଣ କରାଯାଇଛି । ଏହାର ଅନ୍ତରାଳରେ ବହୁ ଉପାଦାନ ଭିତରେ 'ଭାକ୍ତିକତା' ଏକ ଅଂଶ ବିଶେଷ । କିନ୍ତୁ ଆଧୁନିକ ସମାଲୋଚକ ବା ସମୀକ୍ଷକମାନେ ଏହି ''ଭାକ୍ତିକତା''କୁ 'ପାରିଭାଷିକ ମାନ୍ୟତା' ଦେବାକୁ ଚାହାନ୍ତି ନାହିଁ । କାରଣ ସେମାନଙ୍କ ମତରେ ଭାଷଣ ବା ମୌଖିକ ଅଭିବ୍ୟକ୍ତିକୁ ସାଧାରଣତଃ ''ସାକ୍ଷରତା' କ୍ଷେତ୍ରରେ ହିଁ ଗ୍ରହଣ କରାଯାଇଥାଏ । ଓଡ଼ିଶାରେ ଏବେ ଅଧାଅଧି ଲୋକ ନିରକ୍ଷର । ସେଇଥିପାଇଁ ଏହା ଏକ ''ମୌଖିକ ସଂସ୍କୃତି'' । ଅବଶ୍ୟ ଏବର ପଶ୍ଚିମୀ ଲୋକେ ଏହାକୁ ଅନୁନ୍ନତ ବା ଅଣ ବିକାଶପ୍ରାପ୍ତ (under developed) ଆଖ୍ୟା ଦେଇଛନ୍ତି । ସେଥିରୁ ସାକ୍ଷରତା ବଢ଼ିବା ସାଙ୍ଗେ ସାଙ୍ଗେ ଆମେ ପୁଣି ''ବିକାଶଶୀଳ'' ହେବୁ । ଏବେ ଭାରତର 'ପରିବର୍ତ୍ତନ' ଘଟୁଛି (ସେଇଥିପାଇଁ ନୂଆ ଉପାଧି ଲୋଡ଼ା । ଆମେ ଏବେ ତାଙ୍କ ଭାଷାର ରୂପ/ଆକାର (Form)କୁ ଗ୍ରହଣ କରୁଛୁ । ତେଣୁ ପଣ୍ଡିତମାନେ, ଯେଉଁମାନେ 'ଭାଷାର' ବ୍ୟାକରଣ ଲେଖିଛନ୍ତି — 'ଅର୍ଥ ପରିବର୍ତ୍ତନ' କଥା ବୁଝେଇବା

ପାଇଁ ନୂଆ ଶବ୍ଦ ତିଆରି କରନ୍ତି, ସେମାନେ କହୁଛନ୍ତି — ମୌଖିକ ଭାଷା ଓ ଲିପିବଦ୍ଧ ଭାଷାର ସ୍ୱତନ୍ତ୍ର ପ୍ରକାର ବ୍ୟାକରଣ ଅଛି । ଏହା ହିଁ ଏବେ ''ସମାଜ''ର ପ୍ରକାର ଭେଦକୁ ନିର୍ଣ୍ଣୟ କରୁଛି - ପାଠୁଆ ଲୋକେ, ପଢୁଆ ସମାଜ - ଆଉ ଅପାଠୁଆ ଲୋକ (ଏମାନଙ୍କୁ ମୂର୍ଖ, ଅଶିକ୍ଷିତ କୁହାଯାଉଥିଲା - ଏବେ କେହି ସେ କଥା ଲେଖିଲେ, ମାନହାନୀ ମକଦ୍ଦମାର ସମ୍ମୁଖୀନ ହେବା ଅସମ୍ଭବ ନୁହେଁ), ତାଙ୍କର ଏକ ସମାଜ ଅଛି - ଇଂରାଜୀରେ Pre-literate(ପ୍ରାକ୍-ସାକ୍ଷର) Literate(ସାକ୍ଷର), illiterate ରୁ ଏକକ Non-literate (ଅଣସାକ୍ଷର) ସେମାନଙ୍କର ବି ଏକ ସଂସ୍କୃତି ରହିଛି - ସେ ସଂସ୍କୃତି ଛୋଟ (କ୍ଷୁଦ୍ର-Little ) ନୁହେଁ - କି ଶାସ୍ତ୍ର ବାଣୀ ବଡ଼ ନୁହେଁ (Great) । ତେଣୁ ''ମୌଖିକତା''କୁ ଚିହ୍ନିବା ଓ ତା'କୁ ''ସାଇତି ରଖିବା'' ପାଇଁ ବି ଯନ୍ତ୍ର ତିଆରି ହେଲାଣି - ପୁଣି ଏବେ ଏତେ ଯନ୍ତ୍ର ସବୁ ବାହରିଲାଣି ଯେ ''ଶ୍ରୁତି''କୁ ''ଲିପି'' ଉପରେ ନିର୍ଭର କରିବା ଆଉ ଆବଶ୍ୟକ ନୁହେଁ - ସେଇଥିରୁ 'audio' - ଶ୍ରାବ୍ୟ ପୁଣି ନୂଆ ରୂପ ଦେଇ ଦେଖା ଦେଲାଣି - ସେଇଥିରୁ ''ଦୂରଭାଷ'' (telephone) ପୁଣି ଦ୍ରୁତଭାଷ (Mobile) ବି 'ମୌଖିକତା'କୁ ଆପଣେଇ ନେଲାଣି — ଏତେ ଲେଖାଲେଖି ଝଂଝଟକୁ ଯାଉଛି କିଏ ? କହିଦେଲେ, ଠାରି ଦେଲେ ବି ଅର୍ଥ ବୁଝା ପଡୁଛି - ମନ ଛୁଇଁ ହଉଚି, ଅର୍ଥ ବୁଝି ହଉଛି - ଆଉ ସେଇ ଅର୍ଥରୁ ଅନର୍ଥ ବି ସୃଷ୍ଟି ହୋଇ ପାରୁଛି - ତେଣୁ ''ସମାଜ''ର ପରିବର୍ତ୍ତନ ସହିତ 'ପଟ୍ଟ ପରିବର୍ତ୍ତନ' ସହିତ, ମୌଖିକତାରେ ମଧ୍ୟ ପଟ୍ଟ ପରିବର୍ତ୍ତନ ଘଟୁଛି । ଏହି ''ମୌଖିକତା''କୁ ବାନ୍ଧି ରଖିବାକୁ ବି ସଂଗ୍ରହାଳୟ ତିଆରି ହଉଛି । ଏ ସବୁ ହେଉଛି 'ପ୍ରଜ୍ଞାନ' (Technology) ଜରିଆରେ । ତା'କୁ ପାରିଭାଷିକ ତତ୍ତ୍ୱ ବିଶାରଦମାନେ ଦ୍ୱିତୀୟ ଶ୍ରେଣୀର ମୌଖିକତା କହିବା ବି ଆରମ୍ଭ କଲେଣି - ରାଜନୀତିରେ, ଭୋଟ ପ୍ରଚାରରେ ସାମ୍ବାଦିକ ସମ୍ମିଳନୀରେ, କବିତା ପାଠୋତ୍ସବରେ, 'କଫି ହାଉସ୍' (ଚା ଦୋକାନରେ) ଯେଉଁ ଚୁପ୍‌ଚାପ୍ କଥା ଭାଷାରୁ କେତେ ପ୍ରକାରରେ 'ଭାଷାର ବ୍ୟବହାର' ଓ ତା'ର ରୂପାନ୍ତର ଘଟୁଛି । ଏବେ ମୌଖିକତାର ଏକ ''ନୂଆ ଯୁଗ ଆରମ୍ଭ'' ହୋଇଛି । ମନେ

ହେଉଛି ଏକବିଂଶ ଶତାବ୍ଦୀରେ ଏହି ''ମୌଖିକତା'' ହିଁ ସମାଜର, ଜୀବନର, ଚଳଣୀର ପୁଣି କ୍ଷମତାର ନିୟାମକ ହେବାକୁ ଯାଉଛି । ଶବ୍ଦ ସବୁ ଏମିତି ସଶବ୍ଦ ହେଉହେଉ ନିଶବ୍ଦ ବି ହୋଇଯାଉଛି । ତେଣୁ ପାରିଭାଷିକ ତାତ୍ତ୍ୱିକତା ବି ବଦଳି ବଦଳି ଚାଲୁଛି । କିନ୍ତୁ ଏ ସବୁ ସତ୍ତ୍ୱେ ଓଡ଼ିଶାର ''ଇତିହାସ ଶାସ୍ତ୍ର''ର ଧୂରୀଣ ଚର୍ଚ୍ଚା ବିଶାରଦ ମାନେ ''ମୌଖିକ ସଂସ୍କୃତି''ର ଇତିହାସକୁ ''ଚର୍ଚ୍ଚାର ପରିସର'' ଭିତରକୁ ଖୁବ୍ ବେଶୀ ଆଣିପାରି ନାହାନ୍ତି — ବରଂ ଏ ଦିଗରେ 'ସମ୍ବାଦପତ୍ର'ମାନେ, ଗଣ ଯୋଗାଯୋଗ ମାଧ୍ୟମମାନେ ଆଗୁଆ ରହିଯିବେ ଆଉ ବିଶ୍ୱବିଦ୍ୟାଳୟମାନେ 'ବୋଧହୁଏ' 'ଆଦିମବାଦ' (Primitivism) ପର୍ଯ୍ୟାୟକୁ ଚାଲିଯିବେ । ସେଇଥିପାଇଁ ଶ୍ରେଣୀ ଗୃହରେ ଛାତ୍ରଛାତ୍ରୀମାନେ ଆଉ ''ଭାଷଣ'' ଶୁଣିବାକୁ ଆଗ୍ରହ ପ୍ରକାଶ କରିବେ ନାହିଁ — ସେମାନେ ''ଆଲୋଚନା'' ଜରିଆରେ, ପ୍ରଶ୍ନୋତ୍ତର ଜରିଆରେ, ସଂଳାପ ଜରିଆରେ ସବୁ 'ପାଠ୍ୟକ୍ରମ'କୁ ମୂଲ୍ୟାୟନ କରିବେ । ''ବିଚରା'' ଅଧ୍ୟାପକମାନେ ଏ ପ୍ରକାର 'ଛାତ୍ର ମୂଲ୍ୟାୟନ' କେତେକାଳ ରୋକି ପାରିବେ ? ଏବେ ତ ଯେଉଁମାନେ ''ମୌଖିକତା''ର ବିରୋଧୀ, ସେମାନେ ହିଁ ''ମୌଖିକତା'' ଉପରେ ବେଶୀ ଆସ୍ଥା ଦଉଛନ୍ତି - ଯଦିଓ ଜ୍ଞାତ ସାରରେ ନୁହେଁ । 'ସାକ୍ଷାତକାର' ସବୁ ସେହି ''ମୌଖିକତା''ର ଆନୁଷ୍ଠାନିକ ଛାପ ଛଡ଼ା ଆଉ କଣ ? ତେଣୁ ପାଠୁଆ/ଅପାଠୁଆ ଭେଦକୁ ଏବେ ''ମୌଖିକତା'' ଦୂର କରିବାକୁ ଚେଷ୍ଟା କରୁଛି । ଏହା ହିଁ ଆଜିର ''ପାରିଭାଷିକ ତତ୍ତ୍ୱ''ର ପରିସରରେ ତେଣୁ ''ମୌଖିକତା'' ପ୍ରସାରର ସମର୍ଥକ ହୋଇସାରିଛି ।



# ରାଷ୍ଟ୍ରୀୟତାବାଦ (Nationalism)

ଏହି ପ୍ରତ୍ୟୟଟି ''ପଶ୍ଚିମ ଭୂଖଣ୍ଡ''ରେ ସୃଷ୍ଟି କରାଯାଇଥିଲା । କିନ୍ତୁ ଏହାର ପ୍ରତ୍ୟୟଗତ ତାତ୍ପର୍ଯ୍ୟ ଭିତରେ ଅନେକ ବିରୋଧାଭାସ ରହିଛି ଯାହା ଏବେ ବି ବିତର୍କର ବିଷୟ । କାଳକ୍ରମେ ଏହି 'ପ୍ରତ୍ୟୟ' ଓ ତା'ର ଆନୁସଙ୍ଗିକ ବ୍ୟାଖ୍ୟା ଭାରତରେ ପ୍ରବେଶ କରିଥିଲା । ମୁଖ୍ୟତଃ ଇଂରାଜୀ ଶାସନର ଅନୁପ୍ରବେଶ ଓ ସେହିମାନଙ୍କ ଗଢ଼ା ଢ଼ାଞ୍ଚାରେ ଭାରତବର୍ଷକୁ ଏକ ରାଷ୍ଟ୍ର ଭାବରେ ସ୍ୱୀକୃତି ମିଳିଲା ଭାରତୀୟ ସମ୍ବିଧାନ ଜରିଆରେ ୧୯୫୦ ମସିହାରେ । ଏହା ପୂର୍ବରୁ ପ୍ରାୟ ୧୯୦୩ ମସିହାରୁ ଏ ସଂପର୍କରେ ତର୍କ ବିତର୍କ ଏକ 'ମାନସିକତା' ସୃଷ୍ଟି କରିସାରିଥିଲା — ବକ୍ତବ୍ୟରେ, ଲେଖାରେ, ପୁଣି ସାଂସ୍କୃତିକ ଚର୍ଚ୍ଚାରେ । ରାଜନୈତିକ ଦୃଷ୍ଟିକୋଣରୁ ବିଚାର କଲେ ଏହା ଏବେ ବି ଏକ ସ୍ୱଚ୍ଛ ପ୍ରତ୍ୟୟ ନୁହେଁ । କିନ୍ତୁ ରାଷ୍ଟ୍ରର ପ୍ରଗତି ବା ରକ୍ଷଣଶୀଳତାକୁ କେନ୍ଦ୍ରକରି ଏହି ପ୍ରତ୍ୟୟଟିକୁ ବିଭିନ୍ନ ଭାବରେ ପ୍ରସାରିତ କରିବାର ଚେଷ୍ଟାରେ ମଧ୍ୟ ଅନ୍ତ ହୋଇନାହିଁ । ତେଣୁ, ସଂସ୍କୃତିଭିତ୍ତିକ ''ପାଠ''ରେ ପୁରାବୃତ୍ତି, ଇତିହାସ, ଭାବମୂର୍ତ୍ତି ଆଦିକୁ ସାହିତ୍ୟରେ ଗ୍ରହଣ କରି ଏହାକୁ ଏକ ''ପରିଚିତି'' (Identity) ଭାବରେ ଗ୍ରହଣ କରାଯାଇଛି (ଏହାକୁ ଓଡ଼ିଆରେ 'ଜାତୀୟତାବାଦୀ' ସାହିତ୍ୟ କୁହାଯାଇଛି) । କିନ୍ତୁ ''ରାଷ୍ଟ୍ରୀୟତାବାଦୀ ପରିଚିତି' କୁ ଏକ ସଂଜ୍ଞା ଭାବରେ ଉପସ୍ଥାପିତ କରିବା କ୍ଷେତ୍ରରେ ବହୁ ବିବଦମାନ ଯୁକ୍ତି ରହିଛି । ଏଥିପାଇଁ ଭୌଗୋଳିକ କ୍ଷେତ୍ରରେ ଏକ ନିଷ୍ପତ୍ତି ଗୃହୀତ ହୋଇସାରିଛି—ଏହା ହେଉଛି ରାଷ୍ଟ୍ରର ପ୍ରାକୃତିକ ସୀମାରେଖା । ଏହି ସୀମାରେଖା ନିର୍ଦ୍ଦିଷ୍ଟ ରୂପ ନେଲା ବେଳେ ଆଞ୍ଚଳିକ ଇତିହାସ, ଭାଷା, ରାଜନୈତିକ ପରଂପରା, ଧର୍ମଧାରଣା, ବିଶ୍ୱାସ ଆଦି ''ସାଂସ୍କୃତିକ'' ଉପାଦାନକୁ ନେଇ ସଂଘର୍ଷ ଓ ସମାଧାନର ପନ୍ଥା ବେଳେ ବେଳେ ସାଂସ୍କୃତିକ ସଂକେତ/ପ୍ରତୀକ (ଓଡ଼ିଶାରେ ଯେପରି 'ଜଗନ୍ନାଥ'ଙ୍କୁ ନେଇ) କିମ୍ବା ଗୋଷ୍ଠୀଗତ (ଯେପରି 'ଶବର'/Saora ଚିତ୍ର ଆଦି, ବଂଶାନୁଗତ ପୁଣି ପ୍ରଜାତିଗତ (Racial) ପରିଚିତିକୁ ନେଇ ଜନମାନସରେ ଓ ବୌଦ୍ଧିକ ସ୍ତରରେ ମଧ୍ୟ ଅନେକ ତର୍କ-ବିତର୍କ ଲାଗି ରହିଛି ।

ପ୍ରକୃତରେ ଦେଖିବାକୁ ଗଲେ, ଗୋଟିଏ 'ରାଷ୍ଟ୍ର'ର ରାଷ୍ଟ୍ରୀୟତା ପ୍ରାଧାନ୍ୟ ଲାଭ କରେ, ଯେତେବେଳେ ଏହା ଅନ୍ୟ ଏକ ରାଷ୍ଟ୍ର ସହିତ ସଂପର୍କ ପ୍ରତିଷ୍ଠା କ୍ଷେତ୍ରରେ ବାଧକତା ସୃଷ୍ଟି କରେ (ଭାରତ-ନେପାଳ, ଭାରତ-ପାକିସ୍ଥାନ ଆଦି) । ଏହା ମଧ୍ୟ ଏକ ରାଷ୍ଟ୍ର ମଧ୍ୟରେ ଥିବା 'ରାଜ୍ୟ'ମାନଙ୍କ କ୍ଷେତ୍ରରେ ସଂଘର୍ଷର ସୂତ୍ରପାତ କରିଥାଏ (ଅନେକ ସାଂସ୍କୃତିକ ଓ ଅର୍ଥନୈତିକ କାରଣରୁ) । ଏହା "Nation-State" ଯୁଗ୍ମ ପ୍ରତ୍ୟୟ କ୍ଷେତ୍ରରେ ମଧ୍ୟ ସମନ୍ୱୟ ରକ୍ଷା କରିପାରେ ନାହିଁ । ଭାରତରେ କିନ୍ତୁ "Nation-State" ବଦଳରେ ''ରାଷ୍ଟ୍ର'' ଶବ୍ଦ ଉଣା ଅଧିକେ ଗୃହୀତ ଓ ଏଠାରେ ରାଜ୍ୟମାନଙ୍କୁ state ଆଖ୍ୟା ଦିଆଯାଇଛି । କିନ୍ତୁ ବ୍ରିଟିଶ State କହିଲେ England, Scotland, Wales, Northern Ireland କୁ ବୁଝାଇଥାଏ । ଯେଉଁଠାରେ ''ରାଷ୍ଟ୍ରୀୟତାବାଦ'' ଅତ୍ୟାଚାରୀ ହୋଇପଡ଼େ (ଯାହା 'ସାମ୍ରାଜ୍ୟବାଦ' ଇତିହାସ ସୂଚିତ କରିଥାଏ), ସେଠାରେ ''ବିଜେତା ରାଷ୍ଟ୍ର'', ''ବିଜିତ-ରାଷ୍ଟ୍ର'' ଉପରେ ନିଜର ''ଛାଞ୍ଚ''କୁ (model) ଆରୋପ କରିବାର ଚେଷ୍ଟା କରିଥାଏ । କାରଣ ''ବିଜେତା ରାଷ୍ଟ୍ରର ମାନସିକତା''ରେ ତାହାର ''ସଭ୍ୟତା'' (Civilization) ବିଜିତ-ରାଷ୍ଟ୍ରର ''ସଭ୍ୟତା''ଠାରୁ ଉଚ୍ଚକୋଟୀର ବୋଲି ଧରି ନିଆଯାଇଥାଏ । ତେଣୁ ''ବିଜିତ ରାଷ୍ଟ୍ର''ର ସାଂସ୍କୃତିକ ଚେତନାକୁ ଓ ବିଶିଷ୍ଟ ବିଭବକୁ ଅତ୍ୟାଚାରୀ ରାଷ୍ଟ୍ର ଚାପିଦେବାକୁ ଚେଷ୍ଟା କରିଥାଏ । ତେଣୁ ରାଷ୍ଟ୍ରୀୟ ମୁକ୍ତି ସଂଗ୍ରାମରେ 'ଉପନିବେଶବାଦ ଦ୍ୱାରା ପରିଚାଳିତ ରାଷ୍ଟ୍ର' ନିଜର ଇତିହାସ, ଭାଷା ଓ ଚଳଣି ଆଦିକୁ ପୁନର୍ଜୀବିତ କରିବାକୁ ଚେଷ୍ଟା କରିଥାଏ (ଭାରତୀୟ ରାଷ୍ଟ୍ରୀୟ ସଂଗ୍ରାମର ଇତିହାସ ଓ ସାହିତ୍ୟ ବିଚାରକୁ ନିଆଯାଇପାରେ) । କିନ୍ତୁ 'ବିଜେତା ରାଷ୍ଟ୍ର' ରାଷ୍ଟ୍ରୀୟତା ସଂଗ୍ରାମ ଫଳରେ 'ବିଜିତ ରାଷ୍ଟ୍ର' ତ୍ୟାଗ କରି ଗଲାବେଳେ ଯେଉଁ ଅନୁଷ୍ଠାନ (ଶିକ୍ଷା, ପ୍ରଶାସନ, ବିଚାର ବିଭାଗ ଆଦି) ଗୁଡ଼ିକ ସୃଷ୍ଟି କରିଥାନ୍ତି, ସେହି ଅନୁଷ୍ଠାନଗୁଡ଼ିକ ବିଜିତ ରାଷ୍ଟ୍ର ବା ଏ କ୍ଷେତ୍ରରେ 'ନୂତନ ରାଷ୍ଟ୍ର' ତ୍ୟାଗ କରିପାରନ୍ତି ନାହିଁ ଓ ସେହି ଆନୁଷ୍ଠାନିକତା ଭିତରେ ନିଜର ଲକ୍ଷ୍ୟ, ଅଭୀପ୍ସା ଆଦି ରୂପଦେବାକୁ ସଫଳ ହୋଇପାରନ୍ତି ନାହିଁ । ତେଣୁ ''ରାଷ୍ଟ୍ରୀୟତାବାଦୀ'' ସାହିତ୍ୟର ଧାରା ବଦଳିଯାଏ ଓ ନୂତନ ସମସ୍ୟା ସୃଷ୍ଟି କରେ ।

ଏଥିପାଇଁ ରାଜନୈତିକ ଭାବ-ବିଜ୍ଞାନ (Political Ideology) ର ବିଶ୍ଳେଷଣ ଆବଶ୍ୟକ । ସେହି 'ଧାରକରା' ବୁଦ୍ଧି ଅକୁଲାଣ ହେଲେ ପୁଣି ସାଂସ୍କୃତିକ ବିଭବର ଅନୁସନ୍ଧାନ ଓ ବିଶ୍ଳେଷଣ ତଥା ପ୍ରୟୋଗ (ଯେପରି ପଞ୍ଚାୟତିରାଜ) ଆବଶ୍ୟକ ହୋଇପଡ଼େ । ତେଣୁ ''ରାଷ୍ଟ୍ରୀୟ ସାହିତ୍ୟ'' ବଦଳରେ ଆଞ୍ଚଳିକ ସାହିତ୍ୟ, ଆଞ୍ଚଳିକ ସଂସ୍କୃତିର ଉତ୍ତରଣ ଘଟିଥାଏ । ଫଳରେ ଅତୀତକୁ (ରାଷ୍ଟ୍ରଗଠନର ପୂର୍ବାବସ୍ଥା) ସ୍ମରଣ କରି ସେଥିରୁ କେତେକ ଉପାଦନ, ପ୍ରତୀକ, ସଂକେତ, ବ୍ୟବହାର (ଯେପରି Hello ଓ Handshake ବଦଳରେ 'ନମସ୍ତେ')କୁ ପରିମାର୍ଜିତ ରୂପରେ ଗ୍ରହଣ କରାଯାଇଥାଏ (ଯେପରି 'ସତ୍ୟପୀର' ପୂଜା, ମହାଦେବଙ୍କ ପାଖରେ ବେଲପତ୍ର ଲଗାଇବା ସହିତ ଜନ୍ମଦିନରେ "Happy Birthday" ଓ କେକ୍ କଟା ଏକାଠି ଚାଲୁରହେ । ତେଣୁ 'ରାଷ୍ଟ୍ରୀୟତାବାଦ' ସଂପର୍କରେ (ବିଶେଷତଃ ଦକ୍ଷିଣ-ପୂର୍ବ ଏସିଆର ଉପାଦାନ ଉପରେ ନିର୍ଭର କରି) ବେନେଡ଼ିକ୍ଟ ଆଣ୍ଡରସନ୍ ''ରାଷ୍ଟ୍ର''କୁ ବାସ୍ତବ ନୁହେଁ ଏକ ''ପରିକଳ୍ପିତ ଗୋଷ୍ଠୀ'' ବୋଲି ବିଚାର କରିଛନ୍ତି । ଅନେକ ସମାଲୋଚକ ''ଉପନିବେଶବାଦ-ଉତ୍ତର'' ତାତ୍ତ୍ୱିକତାର ବିଚାର କରି କହିଛନ୍ତି ଯେ ଏଭଳି ପରିବେଶରେ ଏହା ଏକ ''ଜଟିଳ ମିଶ୍ରିତ ପରିଚିତି'' ସୃଷ୍ଟି କରିଥାଏ, ଯେଉଁଥିରେ 'ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ରାଷ୍ଟ୍ରୀୟ ପରିଚିତି' ଏକ ସମ୍ମିଳିତ ରୂପ ନିଏ । କିନ୍ତୁ ଏହି ରାଷ୍ଟ୍ରୀୟ ପରିଚିତି ବାଧକତା ସୃଷ୍ଟି କଲେ, ବ୍ୟକ୍ତିର 'ମୁକ୍ତିଚେତନା' ତାକୁ 'ବ୍ୟକ୍ତିବାଦୀ' ଭାବରେ ଉପସ୍ଥାପିତ କରିବାକୁ ଚେଷ୍ଟା କରିଥାଏ — ସାହିତ୍ୟରେ, ନାଟକରେ, ଗଳ୍ପରେ, ଆଲୋଚନାରେ, ବେଶଭୂଷା ଆଦି ସାଂସ୍କୃତିକ ବିଭବର ସକଳ କ୍ଷେତ୍ରରେ । ଗାନ୍ଧିଜୀଙ୍କର ବିଶ୍ଳେଷିତ ପ୍ରତ୍ୟୟର ଉପସ୍ଥାପନା 'ସ୍ୱରାଜ' ରାଷ୍ଟ୍ରୀୟ ପରିଚିତି କ୍ଷେତ୍ରରେ ସେହି ସୂଚନା ଦେଇଥାଏ । ତାଙ୍କ ଭାଷାରେ କହିଲେ -"Swaraj is rule of the Self, not Self-rule" । ଏହା ମଧ୍ୟ ରାଜନୈତିକ କ୍ଷମତା, ''ବ୍ୟକ୍ତିର ଆଇନଗତ ଅଧିକାର'' ଓ ''ସେଥିପାଇଁ ପ୍ରକାଶ ପାଉଥିବା ଅଭିବ୍ୟକ୍ତି'' ମଧ୍ୟରେ ସଂଘର୍ଷର ସୂତ୍ରପାତ କରିଥାଏ । (ଓଡ଼ିଶାରେ ଉଦାହରଣ ସ୍ୱରୂପ ଫୁଲବାଣୀର 'କନ୍ଧ-ପାଣ' ସଂଘର୍ଷ ବା 'ବିସ୍ଥାପିତ ଓ କ୍ଷମତାର ସଂଘର୍ଷ' ସଂର୍ପକୀୟ ସାହିତ୍ୟକୁ 'ଅଭିଚର୍ଚ୍ଚାର ତତ୍ତ୍ୱ' (Theory

of Discourse) ମଧ୍ୟରେ ବିଶ୍ଳେଷଣ କରିବା ଆବଶ୍ୟକ — ଅବଶ୍ୟ 'ମୁକ୍ତ ଚିନ୍ତକ' ଭାବରେ ।

ଏବେ ଏକ ନୂତନ ସମସ୍ୟାର ଉଦ୍ରେକ ହୋଇଛି - ''ଗଣଯୋଗାଯୋଗ ପ୍ରଜ୍ଞାନ'' (IT) ଓ ''ଜଗତୀକରଣ'' ଫଳରେ 'ରାଷ୍ଟ୍ର ରାଷ୍ଟ୍ର' ମଧ୍ୟରେ ଓ ଏପରିକି 'ରାଷ୍ଟ୍ର ଓ ରାଜ୍ୟ' ମଧ୍ୟରେ ଥିବା ଭୌଗୋଳିକ ସଂପର୍କକୁ ମଧ୍ୟ ଆହ୍ୱାନ ଦେଇସାରିଛି ।

ଏହା ରାଜନୈତିକ କ୍ଷମତା / ବା କର୍ତ୍ତୃତ୍ୱ ପ୍ରତି ମଧ୍ୟ ଏକ ଆହ୍ୱାନ । ଏ କ୍ଷେତ୍ରରେ ପ୍ରତ୍ୟହ ସୃଷ୍ଟି ହେଉଥିବା 'ସାହିତ୍ୟ'ର ଆକଳନ ଓ ବିଶ୍ଳେଷଣ ଓଡ଼ିଶାରେ ଆରମ୍ଭ ହୋଇନାହିଁ କହିଲେ ଚଳେ । ଏବେ ଦ୍ୱିତୀୟ ପ୍ରଶାସନିକ ସଂସ୍କାର କମିଶନଙ୍କ ନିକଟରେ ତାହା ହିଁ ଏକ ପ୍ରଧାନ ପ୍ରଶ୍ନ ହୋଇଉଠିଛି —କର୍ତ୍ତୃତ୍ୱ ଓ ତାହାର ଅସଦୁପଯୋଗକୁ ନିୟନ୍ତ୍ରଣ କରିବା ପାଇଁ । ଅନ୍ୟ ଭାବରେ କହିଲେ, ଏହା ଏକ ନୂତନ 'ସାମ୍ରାଜ୍ୟବାଦ' ସୃଷ୍ଟି କରିସାରିଛି । ଏଥିରେ 'ଭୌଗୋଳିକ ସୀମା' ବଡ଼ କଥା ନୁହେଁ, ବାଣିଜ୍ୟିକ ନିୟନ୍ତ୍ରଣ ହିଁ ପ୍ରଧାନ ଆଭିମୁଖ୍ୟ । ତେଣୁ ଏଠାରେ ନିଜର ସ୍ଥିତିକୁ ସୁରକ୍ଷିତ କରିବା ପାଇଁ ଏକ ''ନୂତନ ରାଷ୍ଟ୍ରୀୟତାବାଦ'' ସୃଷ୍ଟି ହେବାର ଉପକ୍ରମ ଦେଖାଦେଇଛି । ତେଣୁ ଆନ୍ତଃ-ରାଷ୍ଟ୍ରୀୟ ଗଣ ଯୋଗାଯୋଗ ମାଧ୍ୟମ ଓ ଏହାର 'ସଂଯୋଗ-ସୂତ୍ର' (ପୁରୁଣା ଭାଷାରେ ସୂତ୍ରଧର) ଏହି 'ନୂତନ ରାଷ୍ଟ୍ରୀୟତାବାଦ'ର ଜନ୍ମଦାତା ବା ଜନ୍ମଦାତ୍ରୀ ହୋଇପାରନ୍ତି । ତେଣୁ ମୁଦ୍ରଣ ସାମ୍ବାଦିକତା ଓ ଇଲେକ୍ଟ୍ରୋନିକ୍ ସାମ୍ବାଦିକତା ଉଭୟ ନୂତନ ରାଷ୍ଟ୍ରୀୟତାବାଦ ସୃଷ୍ଟି କରିବାରେ ନିୟାମକ ହେବାର ସମ୍ଭାବନା ଅଛି — ରାଜନୈତିକ ନେତୃବର୍ଗ ନୁହଁନ୍ତି । ଏହି ଦୃଷ୍ଟିରୁ ସାଂସ୍କୃତିକ ବିଶ୍ଳେଷଣରେ ଏହି ''ଚର୍ଚ୍ଚାର'' ଅନୁସରଣ କରିବା ଦିଗରେ ଶିକ୍ଷାନୁଷ୍ଠାନମାନେ ଅଗ୍ରଣୀ ଭୂମିକା ନେବାର ଆବଶ୍ୟକତା ରହିଛି ।



# ଲିଙ୍ଗଭେଦ (Gender)

ଏହି ''ପ୍ରତ୍ୟୟ''ଟି ସାମାଜିକ, ସାଂସ୍କୃତିକ ଓ ଐତିହାସିକ ପୁନର୍ଗଠନ ବିଦ୍ୟାରେ ''ଲିଙ୍ଗଭେଦ''କୁ ପରିଚିତ କରାଇବା ପାଇଁ ସୃଷ୍ଟି । ଏହା ମଧ୍ୟ ଭାଷା ଓ ବ୍ୟାକରଣଗତ ପାର୍ଥକ୍ୟ ଦର୍ଶାଇଥାଏ । ମୁଖ୍ୟତଃ ଏହା ଶରୀର ଗଠନର ଭିନ୍ନତା ଉପରେ ପ୍ରତିଷ୍ଠିତ ଓ ସାମାଜିକ, ସାଂସ୍କୃତିକ କ୍ଷେତ୍ରରେ ଲିଙ୍ଗଭେଦ ଜନିତ ପରିଚିତି ସୃଷ୍ଟି କରିଥାଏ । ଏହି ସାଂସ୍କୃତିକ/ସାମାଜିକ ଚେତନାକୁ ଭିତ୍ତି କରି ବିଂଶ ଶତାବ୍ଦୀର ସପ୍ତମ ଦଶକରୁ ପାଶ୍ଚାତ୍ୟ ଭୂଖଣ୍ଡରେ ସାହିତ୍ୟିକ ରଚନାରେ ଏହି ଭେଦ (ଲିଙ୍ଗଭେଦ ଜନିତ ସୃଷ୍ଟି ପ୍ରକ୍ରିୟାରେ) ଦର୍ଶାଇବା ଆରମ୍ଭ ହେଲା । ଏହାର ମୌଳିକତା ହେଉଛି ''ନାରୀତ୍ୱ''ର ସଂଜ୍ଞା ନିରୂପଣ ଓ ନାରୀ-ଅଭିଜ୍ଞତାକୁ ସାହିତ୍ୟରେ ପ୍ରକାଶ କରି ଏହି 'ସଂଜ୍ଞା' ଓ 'ଅଭିଜ୍ଞତା' ପୁରୁଷମାନଙ୍କ ଠାରୁ ଭିନ୍ନ ବୋଲି ପ୍ରତିପାଦିତ କରିବାର ଆଭିମୁଖ୍ୟ ।

ସାଧରଣତଃ ପାରଂପରିକ ସାହିତ୍ୟର ବିଶ୍ଳେଷଣରେ ପୁରୁଷମାନଙ୍କର ଶାରୀରିକ ସବଳତା (ଶ୍ରମ, କ୍ରୀଡ଼ା ଓ ଯୁଦ୍ଧ କ୍ଷେତ୍ରରେ) ଜନସାଧାରଣଙ୍କର ମାନସିକତାରେ ଦୃଢ଼ ସ୍ଥାନ ଅଧିକାର କରିଥିଲା । ପ୍ରଥମ ଓ ଦ୍ୱିତୀୟ ମହାସମର ପରବର୍ତ୍ତୀ ସାହିତ୍ୟରେ ଏହି ସାହିତ୍ୟିକ ବିଶ୍ଳେଷଣ ପ୍ରାଧାନ୍ୟ ଲାଭ କଲା । ଅନୁରୂପ ଭାବରେ ନାରୀମାନେ ଶାରୀରିକ ଗଠନରେ ଦୁର୍ବଳ, ସେମାନଙ୍କର ସ୍ଥାନ ଘର କଣରେ ଓ ସେମାନଙ୍କର ଶାରୀରିକ ଗଠନ କେବଳ ପୁରଷମାନଙ୍କର ଯୌନକାମନା ଚରିତାର୍ଥ କରିବା ଓ ମାତୃତ୍ୱର ଭୂମିକା ମଧ୍ୟରେ ସୀମାବଦ୍ଧ ଥିଲା । ତେଣୁ ଯୌନ-ପରିଚିତି ଦୃଷ୍ଟିରୁ ପୁରୁଷମାନେ ସେମାନଙ୍କର କର୍ତ୍ତୃତ୍ୱ ଜାରୀ ରଖି ଆସୁଥିଲେ ଓ ନାରୀମାନଙ୍କ କ୍ଷେତ୍ରରେ ''ପୁରୁଷ ସଂଗମ'' ଏକ ଆଦର୍ଶ ଭାବରେ (''ସୃଷ୍ଟିପ୍ରକ୍ରିୟା''କୁ ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ) ଏକ ଆଦର୍ଶ ଭାବରେ ପରିଗୃହୀତ ହୋଇ ଆସିଥିଲା । ୧୯୮୦ ମସିହାରେ ଆଡ୍ରିକ୍ ରିକ୍ ଏହାକୁ ''ବାଧ୍ୟତାମୂଳକ ଯୌନତା'' ନାମରେ ନାମିତ କରିଥିଲେ । ଏହି ଦ୍ୱୈତ ବିଚାର ଫଳରେ ''ପିତୃପ୍ରଧାନ ସମାଜ''ର ସୁଯୋଗ ଓ ସୁବିଧା ନାରୀମାନଙ୍କ ପକ୍ଷରେ ହାସଲ କରିବାରେ ପ୍ରତିବନ୍ଧକ ସୃଷ୍ଟି ହେଲା । ଏହା

ମଧ୍ୟ ସମଲିଙ୍ଗୀ ଯୌନତା ଓ ହିଞ୍ଜିଡ଼ା ମାନଙ୍କ ସାମାଜିକ ପରିଚିତି କ୍ଷେତ୍ରରେ ବାଧକତା ସୃଷ୍ଟି କରିଥିଲା । ତେଣୁ ଏହି ସାମାଜିକ/ସାଂସ୍କୃତିକ ସଂଜ୍ଞାକୁ ପୁନର୍ଗଠନ କରିବାପାଇଁ ପଶ୍ଚିମ ଭୂଖଣ୍ଡର ସାହିତ୍ୟରେ ବାମାବାଦ ଏକ ସାହିତ୍ୟିକ ଆନ୍ଦୋଳନ ଭାବରେ ସୃଷ୍ଟି ହେଲା ।

ଏହାର ପ୍ରଶିକ୍ଷଣର ବିଭିନ୍ନ ବିଭାଗରେ, ବିଶେଷ ଭାବରେ ସାହିତ୍ୟ/ଭାଷାବିଜ୍ଞାନ ଓ ବିଭିନ୍ନ ପ୍ରକାରର ସାଂସ୍କୃତିକ ଅଧ୍ୟୟନ କ୍ଷେତ୍ରରେ, ଓ ''ପାଠ୍ୟ-ପୁସ୍ତକ'' ନିର୍ବାଚନରେ ବାମାବାଦକୁ ପ୍ରତିନିଧିତ୍ୱ ଦେବା ପାଇଁ ପ୍ରଚେଷ୍ଟା ଆରମ୍ଭ ହେଲା । ତେଣୁ ପୁରୁଷ/ନାରୀ ମଧ୍ୟରେ ଥିବା ସାମାଜିକ/ସାଂସ୍କୃତିକ ବିଭେଦକୁ ଦୂର କରିବା କ୍ଷେତ୍ରରେ ବାମାବାଦ ଚେଷ୍ଟା କରିଚାଲିଲା । ନାଟକରେ ପୁରୁଷମାନେ ନାରୀ ଭୂମିକାରେ ଅଭିନୟ କରିବା ଆଦି ତ୍ୟାଗ କରିବା କ୍ଷେତ୍ରରେ ନାରୀମାନେ ହିଁ ଅଗ୍ରଣୀ ଭୂମିକା ନେଲେ । ଯାହା ''ସର୍ବାଦୌ ଗୃହୀତ'' ଓ ''ପ୍ରାକୃତିକ'' ବୋଲି ବିଚାର କରାଯାଇଥିଲା, ତାହାକୁ ''ନାରୀବାଦୀ''ମାନେ କେବଳ ଏକ ସାମାଜିକ ପରଂପରା ବୋଲି ପ୍ରତିପାଦିତ କରିବାକୁ ଚେଷ୍ଟା ଚାଲୁ ରଖିଲେ ।

''ଲିଙ୍ଗଭେଦ'' ଅଧ୍ୟୟନ ଓ ''ନାରୀବାଦ'' ଅଧ୍ୟୟନ କ୍ଷେତ୍ରରେ ନାରୀମାନଙ୍କୁ ପ୍ରତିନିଧିତ୍ୱ ଦେବାପାଇଁ ଆବେଗ ଦେଖାଦେଲା । ଏହାଛଡ଼ା ''ପ୍ରଶିକ୍ଷଣ ଜଗତ''ର ବାହାରେ ମଧ୍ୟ ପୁରୁଷ ଓ ନାରୀମାନଙ୍କର ସ୍ୱତନ୍ତ୍ର ସଂଘ ଗଢ଼ିଉଠିଲା ଓ ସେମାନେ ମଧ୍ୟ ପରିସ୍ପରର ''ପରିପୂରକ'' ଚିନ୍ତାଧାରାରୁ ମୁକ୍ତ ରହିବାକୁ ଚେଷ୍ଟାକରି ନିଜନିଜ ପାଇଁ ''ସ୍ୱତନ୍ତ୍ର ସ୍ଥାନ'' ନିରୂପଣ କଲେ ଓ ସେହି ଭାବରେ ସମାଜ ଓ ରାଜନୀତିର ସକଳ କ୍ଷେତ୍ରରେ ନିଜର ''ସଂଖ୍ୟା ଜନିତ'' ପ୍ରତିନିଧିତ୍ୱ ବା ''ସ୍ଥାନ ସଂରକ୍ଷଣ ପାଇଁ'' ଆନ୍ଦୋଳନ କରି ଚାଲିଲେ । ଏହା ଫଳରେ ଉଦାରପନ୍ଥୀ, ସମାଜବାଦୀ ଓ ରକ୍ଷଣଶୀଳମାନଙ୍କ କ୍ଷେତ୍ରରେ ଏହି ବିଷୟ ''ମାନସ ମନ୍ଥନ'' ପାଇଁ ବାଟ ତିଆରି କଲା । ଏ ସଂପର୍କରେ ୧୯୯୦ରେ *Endangering Men ! The question of Male Feminist Criticism* ଏକ ଆଦର୍ଶ ଗ୍ରନ୍ଥ ଭାବରେ ''ଅଭିଚର୍ଚ୍ଚା'' (Discourse) କ୍ଷେତ୍ରରେ ସ୍ଥାନ ଅଧିକାର କଲା । ଅନୁରୂପ ଭାବରେ ''ପୁରୁଷତ୍ୱ''ସଂପର୍କରେ ଐତିହାସିକ ଓ ସମାଜବିଜ୍ଞାନୀ ଦୃଷ୍ଟିକୋଣରୁ ମଧ୍ୟ ଗ୍ରନ୍ଥ ପ୍ରକାଶ

ପାଇଲା । ''ସମଲିଙ୍ଗୀ ଯୌନତା'' ଓ ''ଉଭୟଲିଙ୍ଗୀ ଯୌନତା'' କୁ ନେଇ ସାହିତ୍ୟ ବିଶ୍ଲେଷଣ କ୍ଷେତ୍ରରେ ମଧ୍ୟ ଗ୍ରନ୍ଥମାନ ରଚିତ ହେଲା । ଏହା ଫଳରେ ଏହି ''ଭିନ୍ନତା'' ମଧ୍ୟରେ ସନ୍ତୁଳନ ଆଣିବା କ୍ଷେତ୍ରରେ ମଧ୍ୟ ''ଉପଦେଶାତ୍ମକ ଭବିଷ୍ୟବାଣୀ'' ସାହିତ୍ୟିକ ଓ ସାଂସ୍କୃତିକ କ୍ଷେତ୍ରରେ ଦେଖାଦେଲା । ଏହାର ମୁଖ୍ୟ କାରଣ ହେଉଛି ଯେ ''ଭବିଷ୍ୟବାଦୀ''(Futurist)ମାନେ ଏପରି ନାରୀ/ପୁରୁଷର ଶାରୀରିକ ଭିନ୍ନତାକୁ କେନ୍ଦ୍ର କରି ଯେଉଁ ଆଲୋଡ଼ନ ସୃଷ୍ଟି ହେଉଛି, ତାହା ଲୋକମାନଙ୍କର ଜୀବନଧାରା, ଜୀବନବ୍ୟାପୀ ସ୍ଥିତି ପ୍ରତି ବିପଦ ସୃଷ୍ଟି କରିପାରେ ବୋଲି ସୂଚନା ଦେଲେ । ତେଣୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଦୃଷ୍ଟି ଭଙ୍ଗୀରେ ''ଲିଙ୍ଗଭେଦ ଜନିତ'' ସାଂସ୍କୃତିକ ତାତ୍ତ୍ୱିକତାକୁ ''ସାମାଜିକ ପରିବେଶ'' (ଗାଁ, ଗୋଷ୍ଠୀ, ପ୍ରଜାତି ଆଦି) ସହିତ ଏକତ୍ର ବିଚାରକୁ ନେବାକୁ ବିଚାର ଆଲୋଚନା ଏବେ ବି ପଶ୍ଚିମ ଭୂଖଣ୍ଡର ସାହିତ୍ୟକ/ସାଂସ୍କୃତିକ ତାତ୍ତ୍ୱିକତା କ୍ଷେତ୍ରରେ ଏକ ନୂତନ ଦିଗନ୍ତ ସୃଷ୍ଟି କରି ଆସିଛି । ମୋଟାମୋଟି ଭାବରେ ''ଲିଙ୍ଗ ଭେଦ'' ଜନିତ ପ୍ରଭେଦ ମୁଖ୍ୟତଃ ''ଯୌନତା''କୁ ଆଧାର କରି ''ତାତ୍ତ୍ୱିକତା''ର ଉପାଦାନ ହୋଇ ଆସିଛି । ତେଣୁ ନିର୍ଦ୍ଦିଷ୍ଟ ଶ୍ରେଣୀ (ଅର୍ଥନୀତି ଦୃଷ୍ଟିରୁ), ଗୋଷ୍ଠୀ (ସାଂସ୍କୃତିକ ଦୃଷ୍ଟିରୁ) ଓ ଏକ ନିର୍ଦ୍ଦିଷ୍ଟ ସମାଜର ଐତିହାସିକ ପରିବର୍ତ୍ତନର ଧାରାକୁ ମିଳାଇ ଏବେ ''ପରାଉପନିବେଶବାଦୀ'' (Post-colonalism) ସାହିତ୍ୟରେ ଏହାର ''ଅଭିଚର୍ଚ୍ଚାଗତ ତାତ୍ପର୍ଯ୍ୟ'' (Significance of Discourse) ଦିଗରେ ସାହିତ୍ୟ ସମୀକ୍ଷକ, ବିଶ୍ଳେଷକ ଓ ତାତ୍ତ୍ୱିକତା ଦୃଷ୍ଟିରୁ ସାହିତ୍ୟର ବିଭିନ୍ନ ବର୍ଗୀକରଣ କ୍ଷେତ୍ରରେ ଏହାକୁ ବିଚାରକୁ ନେବା ଓଡ଼ିଶାରେ ଆବଶ୍ୟକ । ବିଶେଷଭାବରେ ୧୯୯୦ ପରବର୍ତ୍ତୀ ''ଜଗତୀକରଣ'' ପ୍ରକ୍ରିୟାରେ ସାହିତ୍ୟ ସେହି ପଥରେ ଯିବାର ସମ୍ଭାବନା ରହିଛି । ଏହା ''ଅଭିଚର୍ଚ୍ଚା''ର (Discourse) ଗଭୀରତା ପ୍ରତି ଲକ୍ଷ୍ୟ ରଖିପାରିବ ଓ ତଦ୍ ସଂଗେ ସଂଗେ ବିଭିନ୍ନ ''ବିଷୟ-ଶୃଙ୍ଖଳା'' (Discipline ବା ଆମେ ଯାହାକୁ Subject କହିଆସିଛୁ) ପରସ୍ପର ମଧ୍ୟରେ ''ଆଦାନ-ପ୍ରଦାନ'' ଜରିଆରେ ନିଜକୁ ଉଦାରବାଦୀ କରିବା ସମ୍ଭବ ହୋଇପାରିବ ।



# ସଂସ୍କୃତି (Culture)

ପରିଭାଷା କ୍ଷେତ୍ରରେ Culture ର ଓଡ଼ିଆ ଭାବରେ ''ସଂସ୍କୃତି''କୁ ଗ୍ରହଣ କରାଯାଇଛି । କିଂତୁ ଏହି ପାରିଭାଷିକ ପ୍ରତ୍ୟୟ କାଳର ଗତି ପ୍ରବାହରେ କିପରି ବିଭିନ୍ନ 'ଅର୍ଥ' ପ୍ରକାଶ କରି ଆସିଛି ଓ ତାତ୍ତ୍ୱିକତା କ୍ଷେତ୍ରରେ କିପରି ଏହାର ପ୍ରସାରଣ ଘଟିଛି, ସେ ସଂପର୍କରେ ''ଚର୍ଚ୍ଚା-ବିଶାରଦ''ମାନେ ଓଡ଼ିଶାରେ/ଓଡ଼ିଆରେ ବିଶେଷ ଧ୍ୟାନ ଦେଇଥିବାର ଲକ୍ଷ୍ୟ କରାଯାଉନାହିଁ । ଏହାର ଅର୍ଥଗତ ବ୍ୟୁତ୍ପତ୍ତି ମଧ୍ୟରେ ମାନବୀୟ ଇତିହାସ ଲୁକ୍କାୟିତ ରହିଛି । ଠିକ୍ ଅନୁରୂପ ଭାବରେ ''ରାଜନୈତିକ ସଂସ୍କୃତି''ରେ ଏହା ସେହିପରି ଭାବରେ ଜଟିଳତା ପ୍ରକାଶ କରି ଆସିଛି ।

''ସଂସ୍କୃତି'' ପ୍ରତ୍ୟୟର ବ୍ୟବହାର କ୍ଷେତ୍ରରେ ଦୁଇଟି ସ୍ୱତନ୍ତ୍ର ଧାରା ପରିଲକ୍ଷିତ ହୁଏ । ପ୍ରାଚୀନ କାଳରେ ଏହା ''କୃଷି'' (ପ୍ରାକୃତିକ ବା organic)କୁ ବୁଝାଉଥିଲା । କେବଳ ଆଧୁନିକ କାଳରେ ଏହା ''ସ୍ୱାସ୍ଥ୍ୟ'' ସଂପର୍କୀୟ ଗବେଷଣାକୁ ମଧ୍ୟ ବୁଝାଉଛି । (ଯେପରି Urine Culture) । ସାମାଜିକ ପରିବର୍ତ୍ତନରେ ଏହି ଧାରାଟି ମୋଟାମୋଟି ଭାବରେ କିଛି ପରିମାଣରେ 'ବସ୍ତୁଗତ' ଓ 'ବିଜ୍ଞାନ ସମ୍ମତ' ପରିପ୍ରକାଶକୁ ବୁଝାଇଲା । କିଂତୁ ଏହି ଧାରାଟି ସାହିତ୍ୟ ବା ଯେ କୌଣସି କଳାଗତ ଅଭିବ୍ୟକ୍ତି କ୍ଷେତ୍ରରେ ମୌଳିକ ପ୍ରତ୍ୟୟ ଠାରୁ ତାତ୍ପର୍ଯ୍ୟକୁ ଅସ୍ୱୀକାର କରିପାରିନାହିଁ (ଯେପରି ସେ ଜଣେ ସଂସ୍କୃତି ସମ୍ପନ୍ନ ବ୍ୟକ୍ତି ବା ଅନ୍ୟ ଭାଷାରେ ''ଭଦ୍ର'' ବ୍ୟକ୍ତି) । କିଂତୁ ''ବୌଦ୍ଧିକତା'' ବା କଳାତ୍ମକ ଅଭିବ୍ୟକ୍ତି କ୍ଷେତ୍ରରେ ଏହାକୁ ''ପ୍ରାକୃତିକ ଅବସ୍ଥା''ର (Natural) ସମାଜର, ଗଠନକଳା (Structure) ବା ଗଢ଼ଣରୁ ଜାତ ବୋଲି ଯୁକ୍ତି କ୍ରମଶଃ ବଳବତ୍ତର ହେଲା । ଏଇଥିରୁ କୌଣସି ଏକ ରାଷ୍ଟ୍ର, ଏକ ନିର୍ଦ୍ଦିଷ୍ଟକାଳ ବା ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତିକୁ 'ସମାଜ'ର ଆତ୍ମା ବା ସାହିତ୍ୟ/କଳା/ସଂଗୀତ/ନୃତ୍ୟ ଆଦିର ଆତ୍ମିକ ପ୍ରକାଶ ବୋଲି ଅଭିହିତ କରାଗଲା । ତେଣୁ 'ସାହିତ୍ୟ'ରେ ଯୁଗ ବିଭାଜନର ସୂତ୍ରପାତ ହେଲା ଓ ଏହାକୁ କେହି କେହି ''ଯୁଗଧର୍ମ'' ଭାବରେ ବିଚାର କଲେ । ଏଇ ଆଲୋଚନାର ଧାରାରେ ବ୍ୟକ୍ତିର ପ୍ରକାଶଭଙ୍ଗୀତାର ଅଭିନବତ୍ୱ, ଶୈଳୀ ଆଦିକୁ ବୌଦ୍ଧିକ ବା ଶୈଳ୍ପିକ ବିକାଶ ଭାବରେ ଗ୍ରହଣ କରାଗଲା । ଅଭିନୟ କ୍ଷେତ୍ରରେ ମଧ୍ୟ ଅନୁରୂପ ପରିବର୍ତ୍ତନ ଲକ୍ଷ୍ୟ କରି ହେଲା । ଯେପରି ଅଭିନୟ କଳାର ଚାରୋଟି ବୈଶିଷ୍ଟ୍ୟ, ଆହାର୍ଯ୍ୟ (ବେଶଭୂଷା) ଆଙ୍ଗିକ (ମୁଦ୍ରା, ଆଦିରେ ଅଙ୍ଗଭଙ୍ଗୀ ଜରିଆରେ ପ୍ରକାଶ), ବାଚିକ (ସଂଳାପ), ସାତ୍ତ୍ୱିକ (ଗୁଣାତ୍ମକ ଆଧ୍ୟାତ୍ମିକ ଚେତନା) ପ୍ରାଚୀନ ଭାରତୀୟ ସଂସ୍କୃତିର ଗତିଧାରା ବା

ନିୟାମକ ବୋଲି ସୂଚିତ ହୋଇଥିଲେ ହେଁ ପ୍ରତ୍ୟେକ ବୈଶିଷ୍ଟ୍ୟକୁ ନେଇ ବିଜ୍ଞାନ/ପ୍ରଜ୍ଞାନ କ୍ଷେତ୍ରରେ ବିଭିନ୍ନ ପ୍ରୟୋଗ-ପରୀକ୍ଷା ଚାଲିଲା । ଏଇଥିରୁ ଅଭିବ୍ୟକ୍ତି କ୍ଷେତ୍ରରେ ଥିବା ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ଲକ୍ଷ୍ୟ କରାଯାଇ ପାରିଲା । କ୍ରମେ ଗ୍ରାମ୍ୟ ସଂସ୍କୃତି (ଯାତ୍ରା, ସୁଆଙ୍ଗ ଆଦି), ହୋଟେଲ ସଂସ୍କୃତି, ଦାରିଦ୍ର୍ୟର ସଂସ୍କୃତି, ଓଡ଼ିଶାର ବା ଓଡ଼ିଆଙ୍କର ସଂସ୍କୃତି ଭଳି ବିଭିନ୍ନ ''ଗୋଷ୍ଠୀ'' (ଚିନ୍ତକ ଗୋଷ୍ଠୀ, ପୁଞ୍ଜିବାଦୀ ଗୋଷ୍ଠୀ, ସର୍ବହରା ଗୋଷ୍ଠୀ ଆଦି)ର ଅଭିବ୍ୟକ୍ତିକୁ ମଧ୍ୟ 'ସଂସ୍କୃତି' ଭାବରେ ଚିହ୍ନିତ କରାଗଲା (ଯେପରି ଏବେ ବୀମା ସଂସ୍କୃତି, କର୍ମଚାରୀଙ୍କ ସଂସ୍କୃତି, କର୍ମ ସଂସ୍କୃତି ଆଦି) ।

ଏବେ ଏଇ ''ପ୍ରସାରଣ'' (ବା ପ୍ରସାରିତ ଅର୍ଥ)ର ତାତ୍ତ୍ୱିକତା କ୍ଷେତ୍ରରେ ପଶ୍ଚିମ ଜଗତରେ ଯେଉଁ ''ଅଭିଚର୍ଚ୍ଚାର ଧାରା'' (Trend of Discourse) ସୃଷ୍ଟି ହୋଇଛି, ସେ ସଂପର୍କରେ କିଛି ଆଲୋଚନା କରାଯାଉ । ଏହା କରିବାର ଉଦ୍ଦେଶ୍ୟ ହେଉଛି, ଭାରତୀୟ ସଂସ୍କୃତିରେ ଏହି ''ସଂସ୍କୃତିର ଅଭିଚର୍ଚ୍ଚା'' (Discourse of Culture) କିପରି ହୋଇଛି ବା କିପରି ହେବା ଆବଶ୍ୟକ, ସେ ସଂପର୍କରେ ''ଚର୍ଚ୍ଚା-ବିଶାରଦ''ଙ୍କୁ ସଚେତନତା ପ୍ରକାଶ କରିବାକୁ ସାଦର ନିମନ୍ତ୍ରଣ କରାଯାଉଛି । ଏ ଦିଗରେ ଭାଷା ବିଜ୍ଞାନୀ, ପରିଭାଷା ବିଜ୍ଞାନୀ, ସାହିତ୍ୟ ସମାଲୋଚକ, ସମୀକ୍ଷକ, ସଂସ୍କୃତି ଆଲୋଚକ/ସମୀକ୍ଷକ - ଏକତ୍ର ଏ ଦିଗରେ ''ମାର୍ଗ ଦର୍ଶକ'' ହେବାର ଆବଶ୍ୟକତା ଅନୁଭୂତ ହେଉଛି ।

ଅଷ୍ଟଦଶ, ଊନବିଂଶ ଓ ବିଂଶ ଶତାବ୍ଦୀରେ ୟୁରୋପରେ "Culture" ପ୍ରତ୍ୟୟ ଯେଉଁ ଜଟିଳତା ସୃଷ୍ଟି କରିଥିଲା, ସେ ସମ୍ପର୍କରେ ରେମଣ୍ଡ ଉଇଲିଆମ୍‌ସ୍ ଦର୍ଶାଇଥିଲେ ଯେ ସାହିତ୍ୟ, ସଂଗୀତ, ଚାରୁକଳା, ସାହିତ୍ୟ, ନାଟକ ଓ ଚଳଚ୍ଚିତ୍ର କ୍ଷେତ୍ରରେ ''ସଂସ୍କୃତି'' ପ୍ରତ୍ୟୟର ଅବାଧ ବ୍ୟବହାର ଘଟିଥିଲା । ଏହି ''ପ୍ରତ୍ୟୟ''ର ''ଚର୍ଚ୍ଚା'' ଊନବିଂଶ ଓ ବିଂଶ ଶତାବ୍ଦୀରେ ବିଶେଷ ପ୍ରସାର ଲାଭକଲା । ଏହି ଦୁଇଶହ ବର୍ଷ ଭିତରେ ଚର୍ଚ୍ଚା ବିଶାରଦମାନେ କେବଳ କେତେକ ଶାସ୍ତ୍ରୀୟ ପାଠ୍ୟ (Canon)କୁ ଅଗ୍ରାଧିକାର ଦେଇ, ତାହାକୁ ହିଁ ''ଉଚ୍ଚ ସଂସ୍କୃତି'' (High Culture) ଆଖ୍ୟା ଦେଲେ । ଏହାର ପ୍ରତିପକ୍ଷ ଭାବରେ ଯେଉଁମାନେ 'ଗଣସଂସ୍କୃତି', ଲୋକପ୍ରିୟ ସଂସ୍କୃତିର ପରିପ୍ରକାଶ ସଂପର୍କରେ ଧ୍ୟାନ ଦେଲେ, ସେମାନଙ୍କର ସଂସ୍କୃତିକୁ ''ନିମ୍ନ ବା ଗଣ-ସଂସ୍କୃତି'' କୁହାଗଲା (Low or Mass) । ବିଂଶ ଶତାବ୍ଦୀରେ ''ଶିଳ୍ପ ସଂସ୍କୃତି''ର ପ୍ରସାର ଫଳରେ ଏହି ''ଦ୍ୱିବିଧ'' ବର୍ଗୀକରଣ ସଂପର୍କରେ ଆଲୋଚନା ଚାଲୁ ରହିଲା । ଏହି ଶତାବ୍ଦୀରେ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଘଟିଲା, ତାହାହିଁ ଏହି ବର୍ଗୀକରଣ, 'ଉଚ୍ଚ', ନୀଚ ବା 'ଗଣ'କୁ ପ୍ରାଧାନ୍ୟ ଦେଲା । ପାରଂପରିକ ସମାଜରେ ଏହା ପ୍ରଚ୍ଛନ୍ନ ଭାବରେ

ଥିଲେ ମଧ୍ୟ ବିଂଶ ଶତାବ୍ଦୀରେ ଏହା ପ୍ରାଧାନ୍ୟ ଲାଭ କଲା । ସେଇଥିପାଇଁ ରବର୍ଟ ରେଡ୍‌ଫିଲ୍ଡ ସାଂସ୍କୃତିକ ମାନବ ବିଜ୍ଞାନ କ୍ଷେତ୍ରରେ "Great" (ମହାନ୍) ଓ Little (କ୍ଷୁଦ୍ର) ସଂସ୍କୃତିର ବ୍ୟାଖ୍ୟା କଲେ ଓ ଏହାହିଁ ଚିକାଗୋ ଚିନ୍ତକ ଗୋଷ୍ଠୀର (Chicago School of thought) ଆଭିମୁଖ୍ୟ ଭାବରେ ସ୍ୱୀକୃତି ଲାଭ କଲେ । ଏହି ପ୍ରତ୍ୟୟରେ ''ଲୋକଙ୍କର ସଂସ୍କୃତି''ର ମୂଲ୍ୟବୋଧ କଳନା ହେଉଥିବାରୁ ଏହାର ପ୍ରତିପକ୍ଷ ଯୁକ୍ତି ଭାବରେ ଡେଭିଡ୍ ମାଣ୍ଡେଲବାଉମ୍ "transcendental" (ଅଲୌକିକ) ଓ Pragmatic (ଅଧିବାସ୍ତବ) ଭାବରେ ସଂସ୍କୃତିର ବର୍ଣ୍ଣନା କଲେ । ମନେ ହେଉଛି ଡେଭିଡ୍ ମାଣ୍ଡେଲବାଉମ ଏପରି ବର୍ଗୀକରଣ କରିବା ଅନ୍ତରାଳରେ ତାଙ୍କର ଜୀବନବ୍ୟାପି ଭାରତୀୟ କ୍ଷେତ୍ରଜ ଅଭିଜ୍ଞତା ପ୍ରଭାବ ବିସ୍ତାର କରିଥାଇପାରେ । ରବର୍ଟ ରେଡ୍‌ଫିଲ୍ଡଙ୍କର କ୍ଷେତ୍ରଜ ଅଧ୍ୟୟନ ଥିଲା ଲାଟିନ୍ ଆମେରିକାରେ । ତେଣୁ ଏଠାରେ ମଧ୍ୟ ''ରାଷ୍ଟ୍ରୀୟ ସଂସ୍କୃତି''ର ପ୍ରଭାବ ''ପ୍ରତ୍ୟୟଗତ'' ବ୍ୟୁତ୍ପତ୍ତିକୁ କିପରି ପ୍ରଭାବିତ କରିଥାଏ, ତାହା ଲକ୍ଷଣୀୟ ।

ତେଣୁ ''ସଂସ୍କୃତି''ର ପ୍ରତ୍ୟୟଗତ ଚର୍ଚ୍ଚା କ୍ଷେତ୍ରରେ ''ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧ'' ଓ ଶାସ୍ତ୍ରୀୟ (ଲିଖିତ ସାହିତ୍ୟ) ମାନଦଣ୍ଡକୁ ଚର୍ଚ୍ଚା ବିଶାରଦ ମାନେ ସ୍ୱୀକୃତି ଦେଇଥିଲେ । ଏହାରି ଫଳରେ ବିଂଶ ଶତାବ୍ଦୀରେ ''ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ'' (Dialectical materialism)ର ପ୍ରଭାବ ବଢ଼ିବା ସଂଗେ ସଂଗେ ''ମାର୍କ୍ସୀୟ ଚିନ୍ତନର'' ଛାଞ୍ଚରେ ବିଭିନ୍ନ ''ସଂସ୍କୃତି''କୁ କଳନା କରିବା ଆରମ୍ଭ ହେଲା । ଠିକ୍ ସେହି ସମୟରେ ୟୁରୋପରେ "Folklore" (ଲୋକ-ବିଦ୍ୟା) ଓ Folk-culture (ଲୋକ-ସଂସ୍କୃତି)ର ଆଲୋଚନା ମଧ୍ୟ ଜନ୍ମଲାଭ କଲା । ତା'ରି ପ୍ରଭାବରେ ଭାରତରେ ବା ଓଡ଼ିଶାରେ ''ଶାସ୍ତ୍ରୀୟ'' ଓ ''ଦେଶୀ'' ମାର୍ଗର ବିଭାଜନ ଘଟିଲା । ତାହା ହିଁ ଲିଖିତ/ଅଲିଖିତ ସାହିତ୍ୟ ମଧ୍ୟରେ ଏକ ଉଚ୍ଚ/ନୀଚ ଭାବକୁ ବଳବତ୍ତର ରଖି ଯେଉଁମାନେ ''ଲୋକ-ସଂସ୍କୃତି''ର ଚର୍ଚ୍ଚାରେ ଧ୍ୟାନ ଦେଲେ ସେମାନେ କିଛି ପରିମାଣରେ ଅପାଂକ୍ତେୟ ରହିଗଲେ । ଗାନ୍ଧିଜୀ ଏହାକୁ ''ଗଣପାଇଁ ସୃଷ୍ଟି'' (Mass Production) ''ଗଣଦ୍ୱାରା ସୃଷ୍ଟି'' (Production by Mass) ପ୍ରଭେଦଟିକୁ ଦର୍ଶାଇ ତା'ର ସପକ୍ଷରେ ଜୀବନବ୍ୟାପୀ କାର୍ଯ୍ୟକ୍ରମ, ରଚନାତ୍ମକ କର୍ମର ଯୋଜନା ପ୍ରସ୍ତୁତ କଲେ ମଧ୍ୟ (ଯେପରି ଚରଖା, ଖଦୀର ପ୍ରଚଳନ, କମ୍ପୋଷ୍ଟ ଖତ, ମହୁଚାଷ ଆଦି) ତାହା ଶିଳ୍ପ ସମାଜର ପ୍ରାଧାନ୍ୟକୁ ପରିବର୍ତ୍ତିତ କରିବା ଦିଗରେ ସମର୍ଥ ହୋଇପାରିଲା ନାହିଁ । ସଂସ୍କୃତି କ୍ଷେତ୍ରରେ ଗାନ୍ଧିଜୀ, ଲୋକ ସଂସ୍କୃତି ଅଧ୍ୟୟନ, ଲୋକଙ୍କ ଭାଷାର ଅଧ୍ୟୟନ ରାଷ୍ଟ୍ରୀୟ ବିକାଶ ପାଇଁ ଯେ ଅପରିହାର୍ଯ୍ୟ ତାହା ଦର୍ଶାଇଥିଲେ । ମନେହୁଏ ଗାନ୍ଧିଜୀଙ୍କର ୟୁରୋପୀୟ ଓ ଆଫ୍ରିକୀୟ ଅଭିଜ୍ଞତା, ଭାରତୀୟ ରାଷ୍ଟ୍ରୀୟତାବାଦର ଅନ୍ତରାଳରେ ପ୍ରଭାବ ବିସ୍ତାର

କରିଥିଲା । କିନ୍ତୁ ଗାନ୍ଧିଜୀଙ୍କର ଚିନ୍ତାଧାରା ପରୋକ୍ଷ ଭାବରେ ପ୍ରଭାବ ବିସ୍ତାର କରିଥିଲେ ମଧ୍ୟ 'ସଂସ୍କୃତି'ର ମୁଖ୍ୟଧାରା ରହିଲା—ଶିଳ୍ପ ସଭ୍ୟତାର ଆଭିମୁଖ୍ୟ ।

ତେଣୁ ଉଭୟ ୟୁରୋପୀୟ (ଓ ତାହାର ସଂପ୍ରସାରଣ ଆମେରିକାରେ) ଓ ଭାରତୀୟ ସମାଜରେ ''ସଂସ୍କୃତି''ର ରୂପାନ୍ତର ଘଟିଛି—କୃଷିଭିତ୍ତିକ ସଂସ୍କୃତି ଓ ଶିଳ୍ପ ଭିତ୍ତିକ ସଂସ୍କୃତି ମଧ୍ୟରେ । ଏଇଠାରେ ମାଥ୍ୟୁ ଆରନୋଲ୍ଡ (ତାଂକରି ଲେଖା ଆମ ସମୟରେ କଲେଜ ପାଠ୍ୟରେ ଥିବାରୁ ଏହାର ପ୍ରଭାବ ସେ ସମୟର ବ୍ୟକ୍ତିମାନସରେ ପ୍ରଭାବ ବିସ୍ତାର କରିଥିବା ସମ୍ଭବ), ଏଫ୍.ଆର୍, ଲେଭି ଓ ଟି.ଏସ୍. ଏଲିଅଟ୍‌ଙ୍କ ଲେଖା (A note Towards Definition of Culture) ସେ କାଳର ଶିଳ୍ପ-ସଂସ୍କୃତିର ବିରୋଧାତ୍ମକ ଅଭିବ୍ୟକ୍ତି ପ୍ରକାଶ କରୁନାହିଁ କି ?

ଏଥିରୁ ମନେ ହେଉଛି,''ସଂସ୍କୃତି'' ପ୍ରତ୍ୟୟଟି ଉଭୟ ଉଦାରବାଦୀ ଓ ବୈପ୍ଳବିକ ଚିନ୍ତାଧାରାର ଲେଖକ/କଳାକାରଙ୍କ ଦ୍ୱାରା ବିଭିନ୍ନ ଭାବରେ ନିୟୋଜିତ ହୋଇ ଆସିଛି । ଫଳରେ ''ସଂସ୍କୃତି''ର ଆଧ୍ୟାତ୍ମିକ ବ୍ୟାଖ୍ୟା, ଅର୍ଥନୈତିକ ଓ ରାଜନୈତିକ ବ୍ୟାଖ୍ୟା ଲେଖକୀୟ ବିପ୍ଳବ ସୃଷ୍ଟି କରି ଆସିଛି । ଅନ୍ୟ ଭାଷାରେ କହିଲେ ''ସଂସ୍କୃତି''ର ପୁନରୁତ୍ଥାନବାଦୀ ଭୂମିକା ଓ ''ଅର୍ଥନୈତିକ ବସ୍ତୁବାଦ'' ମଧ୍ୟରେ ସଂଗ୍ରାମ ଜାରି ରହିଛି । ମାର୍କ୍ସୀୟ ଚିନ୍ତାଧାରାର ଅନୁଗାମୀ ଥିଓଡ଼ର ଆଡ଼ରନୋଙ୍କଠାରୁ ଆଲଥୁସର୍ ଓ ଗ୍ରାମ୍‌ସିଙ୍କ ପର୍ଯ୍ୟନ୍ତ ଓ ଏବର ଜଗତୀକରଣର ପରୀକ୍ଷା ନିରୀକ୍ଷା ଭିତରେ ''ସଂସ୍କୃତି'' ପ୍ରତ୍ୟୟର ରୂପାନ୍ତର, ଭାବାନ୍ତର, ଅର୍ଥାନ୍ତର ଘଟି ଚାଲିଛି — ବିଭିନ୍ନ ସାମାଜିକ ପରିବେଶ ଓ ପରିବେଷ୍ଟନୀର ପ୍ରୟୋଗଶାଳାରେ । ତେଣୁ 'ସଂସ୍କୃତି' ପ୍ରତ୍ୟୟର ଏହି ବିଭିନ୍ନତା ଆମର ଭାବଧାରା, ମନୋଭାବ ଓ ଅଭିଜ୍ଞତା ଉପରେ ମଧ୍ୟ ପ୍ରଭାବ ବିସ୍ତାର କରି ଆସିଥିବାରୁ, ଆମର ''ଅଭିବ୍ୟକ୍ତି''ରେ (ଲିଖିତ/ଅଲିଖିତ – -ତାହା ସାହିତ୍ୟ, କଳା, ନୃତ୍ୟ, ସଂଗୀତ ଯାହା ହେଉନା କାହିଁକି) ମଧ୍ୟ ''ସଂସ୍କୃତିଗତ'' ପ୍ରକାଶ ଶୈଳୀରେ ପରିବର୍ତ୍ତନ ଲକ୍ଷ୍ୟ କରି ହେଉଛି ।

ମୋର ଅଧ୍ୟୟନ ଓ ଅଭିଜ୍ଞତାର ପରିଧିଭିତରେ ନିଜକୁ ସୀମିତ ରଖି ଆଶା କରୁଛି ଯେ ଓଡ଼ିଆ ସାହିତ୍ୟର ଆଲୋଚକ, ସମାଲୋଚକ ଓ ଅଭିଚର୍ଚ୍ଚା ବିଶାରଦମାନେ ଉପରଲିଖିତ ସୂଚନାତ୍ମକ ଭୂମିକାକୁ ସଂପ୍ରସାରିତ କରି, ସେହି ମାର୍ଗରେ ସାହିତ୍ୟ ଓ ସଂସ୍କୃତିର କଳନା କରିବା ଏବର ''ବହୁ ସଂସ୍କୃତିବାଦ'' (Multiculturalism) ପରିପ୍ରେକ୍ଷୀରେ ଆବଶ୍ୟକ ହୋଇପଡ଼ିଛି ।



# ସଂସ୍କୃତିର ତାତ୍ତ୍ୱିକ ଦିଗନ୍ତ
# (Theories of Culture)

ପ୍ରଥମରୁ କହିରଖେ ଯେ ଏଠାରେ 'ସଂସ୍କୃତି' ଶବ୍ଦଟିକୁ 'କଲଚର୍'ର ଆନୁସୂଚିକ/ପାରିଭାଷିକ 'ଅନୁସୃଷ୍ଟି' ('ଅନୁବାଦ'ର ଅର୍ଥ ଭାବରେ ଗୃହୀତ ହୋଇଥିଲେ ବି 'ଅନୁସୃଷ୍ଟି'କୁ 'ଟ୍ରାନସକ୍ରିଏସନ୍' ଭାବରେ ଗ୍ରହଣ କରାଯାଉଛି) ଭାବରେ ତାତ୍ତ୍ୱିକତା (ଥିଓରିଟିକାଲ୍)ର ବିସ୍ତୃତ ଦିଗନ୍ତ ଭାବରେ ଗ୍ରହଣ କରାଯାଉଛି । 'ସଂସ୍କୃତ' ଭାଷାରେ ଏହା ''ସମ୍ + କୃ + କ୍ତି'' ଓ ଓଡ଼ିଆରେ 'ସମ୍ + କୃ +ତି' ଗ୍ରହଣ କରାଯାଇଛି । ଏହାର ଅର୍ଥ ହେଉଛି 'ସୁକାର୍ଯ୍ୟ' ବା ''ସୁକର୍ମ'' ।

ପାଶ୍ଚାତ୍ୟ ଭାଷାରେ (ଗ୍ରୀକ୍, ଲାଟିନ୍ ଆଦିଠାରୁ ଏବର ଇଂରାଜୀ ଭାଷାରେ) ଏହି 'ଶବ୍ଦ' ଓ 'ପ୍ରତ୍ୟୟ'ର ବହୁବିଧ ''ସଂଜ୍ଞା'' ବା ''ସୀମାବଦ୍ଧତା'' ଆରୋପ କରା ସରିଛି । ଏହି ବିଭିନ୍ନ 'ସଂଜ୍ଞା'ର ସ୍ୱରୂପ, ଅର୍ଥ, ବ୍ୟାବହାରିକତା, ବାର୍ତ୍ତା ଆଦି ଏଠାରେ କଳନା କରାଯାଉନାହିଁ । ବରଂ ''ସଂସ୍କୃତି'' ପ୍ରତ୍ୟୟଟିର (ବିଶେଷ ଭାବରେ ପାଶ୍ଚାତ୍ୟ ଜଗତରେ) ''ତାତ୍ତ୍ୱିକତା'' କିପରି ବିଶ୍ଳେଷିତ ହୋଇ ଆସିଛି ଓ ''ଅଭିଚର୍ଚ୍ଚା'' (ଡ଼ିସ୍‌କୋର୍ସର ପାରିଭାଷିକ ଶବ୍ଦ ଭାବରେ ଏଠାରେ ଉଲ୍ଲେଖ କରାଯାଇଛି)କୁ କିଭଳି ତର୍କ-ବିତର୍କ, ଗ୍ରହଣୀୟ, ଗୃହୀତ ବା ପରିତ୍ୟକ୍ତ କରି ଆସିଛି ତା'ର ଏକ ସୂଚନା ଦେବା ଏହି 'ଲେଖା'ର ଉଦ୍ଦେଶ୍ୟ ।

ପ୍ରଥମେ ''ରାଜନୀତି'' (ପଲିଟିକସ୍‌ର ଅନୁବାଦ) ପୁଣି ରାଜନୈତିକ ସଂସ୍କୃତି (ପଲିଟିକାଲ୍ କଲ୍‌ଚର୍) ରାଜନୀତି ଓ ସଂସ୍କୃତି (ପଲିଟିକସ୍ ଏଣ୍ଡ କଲ୍‌ଚର୍) ପୁଣି ''ସଂସ୍କୃତିର ରାଜନୀତି'' (ପଲିଟିକସ୍ ଅଫ୍ କଲଚର୍) ଆଦି ଅନେକ ବିଚାର ଆସିଯାଉଛି । ପୁଣି ଲୋକମୁଖରେ ପ୍ରଚଳିତ ''ରାଜନୀତିରେ ପଲିଟିକସ୍'' ପଶିଗଲାଣି ଭଳି ''ଉଦ୍ଧୃତି'' ମଧ୍ୟ ରହିଛି ।

ତେଣୁ ଆମକୁ ଧରିନେବାକୁ ହେବ ଯେ 'ସଂସ୍କୃତି' ପ୍ରତ୍ୟୟ (କନ୍‌ସେପ୍ଟ)ଟି ଏକ ଜଟିଳ ପ୍ରଶ୍ନର ବିଶ୍ଳେଷଣ ପାଇଁ ''ଉତ୍ତର'' ଖୋଜୁଛି । ତେଣୁ ଯେଉଁମାନେ ପାଶ୍ଚାତ୍ୟ ଜଗତରେ ଏହି ''ପ୍ରତ୍ୟୟ''ର ଅର୍ଥ ଅର୍ଥାନ୍ତର ଓ ଯେଉଁ ବିଶେଷଜ୍ଞମାନଙ୍କ ହାତରେ ଏହି ପ୍ରତ୍ୟୟଟିର 'ତାତ୍ତ୍ୱିକତା' ପରିମାର୍ଜିତ, ସଂଶୋଧିତ, ବା ବ୍ୟାପ୍ତି ଲଭୁଛି,

ସେହିମାନଙ୍କର 'ଚିନ୍ତନ'କୁ ଏଠାରେ ଉଲ୍ଲେଖ କରାଯାଉଛି । ଏହାର ଅନ୍ୟତମ କାରଣ ହେଉଛି ଯେ ''କଲଚର୍'' କହିଲେ ''ଇଂରାଜୀ ପଢୁଆ ଲୋକେ'' ଯାହା ବୁଝନ୍ତି, ''ସଂସ୍କୃତି'' କହିଲେ ''ଓଡ଼ିଆ ପଢୁଆ'' ଲୋକେ କ'ଣ ସେଇୟା ବୁଝନ୍ତି ? ଏ ପ୍ରଶ୍ନ ମୋ ମନରେ କାହିଁକି ଉଙ୍କି ମାରିଲା, ତା'ର କାରଣ ହେଉଛି ଯେ ଓଡ଼ିଶାରେ ଏକ ଉତ୍କଳ ୟୁନିଭରସିଟି ଅଫ୍ କଲ୍‌ଚର୍ ଓ ତା'ର ଓଡ଼ିଆ ଅନୁବାଦ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ଭାବରେ ନାମିତ ଓ ଗୃହୀତ ହୋଇ ସାରିଛି । ଏପରି ଏକ ନାମକରଣ ଓ ତାହାର ପ୍ରୟୋଜନୀୟତା ବା ତାହାର ଲକ୍ଷ୍ୟ (ଅବ୍‌ଜେକଟିଭ୍) କ'ଣ ତାହା ମୁଁ ଜାଣେ ନାହିଁ - ଏହା କଣ ''ସଂସ୍କୃତି'' ସଂପର୍କରେ ଆଲୋଚନା ପାଇଁ ଏକ ''ପ୍ରଶିକ୍ଷଣ କେନ୍ଦ୍ର'' - ନା' ଏହା କେବଳ ''ଉତ୍କଳୀୟ ସଂସ୍କୃତି'' (କଲଚର୍ ଅଫ୍ ଉତ୍କଳ) ଚର୍ଚ୍ଚାର ଏକ କେନ୍ଦ୍ର ନା' ସଂସ୍କୃତିର ସଂଜ୍ଞା, ବ୍ୟାବହାରିକତା, ବ୍ୟାପକତା ଅଧ୍ୟୟନ ଓ ଚର୍ଚ୍ଚାର ଏକ କେନ୍ଦ୍ର ! ଏଇଭଳି ଅନେକ ପ୍ରଶ୍ନ ମନକୁ ଆସୁଛି ।

ଏହା ସେପରି ଏକ 'ବିତର୍କ'ର ପ୍ରଶ୍ନ ନୁହେଁ -ଯେଭଳି ରାଷ୍ଟ୍ରୀୟତାବାଦ (ନେସନାଲ୍‌ଜିମ୍) ବା ''ସାଂସ୍କୃତିକ ରାଷ୍ଟ୍ରୀୟତାବାଦ'' (କଲଚରାଲ୍ ନେସନାଲ୍‌ଜିମ୍) ବୁଝି ବୁଝାଇବାକୁ ଚେଷ୍ଟା ଚାଲୁଥିଲା ବେଳେ ''ଅଭିଚର୍ଚ୍ଚା''ର ତାତ୍ତ୍ୱିକତା କ୍ଷେତ୍ରରେ ଏ ପ୍ରଶ୍ନ ସମାଧିତ ହୋଇ ନାହିଁ, ହେବା ସମ୍ଭବ ନୁହେଁ, ପୁଣି ସାମୟିକ ଭାବରେ ସମାଧିତ ହେଲେ ବି 'କାଳ' (ଟାଇମ୍)ର ପ୍ରବାହରେ ଏହି ଅର୍ଥ ଗୁଡ଼ିକର ମଧ୍ୟ ପରିବର୍ତ୍ତନ ଘଟିବ । ଯେପରି ବ୍ୟାବହାରିକତା ଦୃଷ୍ଟିରୁ ଦେଖନ୍ତୁ, ଏବେ ଆମେରିକାର 'ଟାଇମ୍‌ଲାଇନ୍' କ୍ଷୁଦ୍ର ଶବ୍ଦର ବ୍ୟବହାର ଚାଲିଛି, ଯାହାର ଅର୍ଥ ହେଉଛି 'ସମୟର ସରଳରେଖା'ରେ । କିଂତୁ ଭାରତରେ ଏହା ଉପରସ୍ତରରେ ଗୃହୀତ ହୋଇଥିଲେ ବି ଏହାର 'ଅର୍ଥ' ଉପରସ୍ତରର ଲୋକଙ୍କ ମଗଜରେ ପ୍ରବେଶ କରିଛି କି ନାହିଁ କହି ପାରିବି ନାହିଁ - କିଂବା ତାହାର ପରିସଂଖ୍ୟାନଗତ ସିଦ୍ଧାନ୍ତ ଦେଖିନାହିଁ - କିଂତୁ ଭାରତୀୟ ସାଂସ୍କୃତିକ ମଗଜରେ (କଲଚରାଲ୍ ମାଇଣ୍ଡ ବା ମେଣ୍ଟାଲ୍ କଲ୍‌ଚର୍) ଏହା ବୋଧହୁଏ ହେବ 'ଟାଇମ ସାଇକେଲ' ଅର୍ଥାତ୍ 'କାଳଚକ୍ର' ।

ଏବେ ପାଶ୍ଚାତ୍ୟ ଜଗତର ତାତ୍ତ୍ୱିକତା କ୍ଷେତ୍ରରେ ('ସଂଜ୍ଞା' କ୍ଷେତ୍ରରେ ଏଠାରେ ବିଚାର୍ଯ୍ୟ ନୁହେଁ) କୁହାଯାଉଛି ଯେ ଏହା 'ଜଟିଳ' ହେଲେ ମଧ୍ୟ ଏହାର ଏକ ''ମୁକ୍ତ ଇତିହାସ'' ରହିଛି । ସେହି 'ମୁକ୍ତ'ର ଏଠାରେ ଅର୍ଥ ହେଉଛି 'ମାନବୀୟ ଇତିହାସ'ର ଜଟିଳତାକୁ ପ୍ରକାଶ କରିବାକୁ 'ସଂସ୍କୃତି' ପ୍ରତ୍ୟୟରେ ପର୍ଯ୍ୟାପ୍ତ ସ୍ଥାନ (ସ୍ପେସ୍) ରହିଛି ।

'ସଂସ୍କୃତି' ବା କଲ୍‌ଚର୍ ସେମାନଙ୍କ ଜଗତରେ ମଧ୍ୟ ସୃଷ୍ଟି ହେଲାବେଳେ ଏହା 'ଜୈବିକ କୃଷି' (ଅର୍‌ଗାନିକ୍ ଫାର୍ମିଙ୍ଗ୍)କୁ ବୁଝାଉଥିଲା (ବୋଧହୁଏ ଆମ ସହିତ ତୁଳନା କଲେ ଏହା 'କୃଷି' ଶବ୍ଦର ପାଖାପାଖି) କିମ୍ବା ଜୈବିକ ସଂସ୍କୃତି (ବାଓଲୋଜିକାଲ୍ କଲଚର୍ ଅର୍ଥରେ) ର ବିଶ୍ଳେଷଣ ଯାହା 'ପରୀକ୍ଷାଗାର'ରେ କରାଯାଉଥିଲା । ସେଠାରୁ ଏ 'ପ୍ରତ୍ୟୟ'ର ସଂପ୍ରସାରଣ ଘଟି 'ମଣିଷମାନଙ୍କ କ୍ଷେତ୍ରରେ' ଏହାର ବ୍ୟବହାର ବଢ଼ିଲା - ଯେପରି 'ସଂସ୍କୃତି ସମ୍ପନ୍ନ ମଣିଷ' (କଲ୍‌ଚରଡ୍ ଜେଣ୍ଟେଲମ୍ୟାନ୍) । ପୁଣି ସମାଜପତି (ଇଲାଇଟ୍) ମାନଙ୍କ ହାତରେ, ବୌଦ୍ଧିକତା କ୍ଷେତ୍ରରେ, ଚାରୁ/କାରୁ କଳା କ୍ଷେତ୍ରରେ, ସମାଜର ବ୍ୟକ୍ତି ବିଶେଷଙ୍କର ପ୍ରକାରଭେଦ, ବର୍ଗୀକରଣ ଓ ତା'ର ଅର୍ଥ ଅର୍ଥାନ୍ତର ସୃଷ୍ଟି କଲା (ଯେପରି ବାହୁଣିଆ ବା କରଣିଆ ବା ଖଣ୍ଡେଇତିଆ ସଂସ୍କୃତିଠାରୁ ଆଦିବାସୀ ସଂସ୍କୃତି ପର୍ଯ୍ୟନ୍ତ ପୁଣି 'ପୁଅ'ଙ୍କର, ଝିଅଙ୍କର ସଂସ୍କୃତି—ମେଲ୍ / ଫିମେଲ୍ କଲ୍‌ଚର୍ ଆଦି) । ଏହି ବର୍ଗୀକରଣ, ତା'ର ସ୍ୱରୂପ (ଫର୍ମ) ଓ ଅର୍ଥ-ଅନୁସନ୍ଧାନ ଯୋଗୁଁ ଏହା 'ମଣିଷ ସମାଜକୁ' ଓ ତା'ର ସୃଷ୍ଟି ପ୍ରକ୍ରିୟାକୁ 'ବିଭକ୍ତ' କରିବାରେ ସାହାଯ୍ୟ କଲା । ପୁଣି ବିଭିନ୍ନତା ଭିତରେ 'ଏକତ୍ୱ' ଖୋଜିବାର ଚେଷ୍ଟା ମଧ୍ୟ ଜାରୀ ରହିଲା (ଯେପରି ମାନବବାଦୀ ସଂସ୍କୃତି - ହ୍ୟୁମାନିଷ୍ଟିକ୍ କଲ୍‌ଚର୍) । ମୋଟାମୋଟି ଭାବରେ ଦେଖିଲେ ଏହି 'ଶବ୍ଦ' ଓ ପ୍ରତ୍ୟୟଟିର ଜନ୍ମଜାତକ ସୂଚନା ଦେଉଛି ଯେ ଏହା 'ମନୁଷ୍ୟକୃତ', ସମାଜଦ୍ୱାରା ଗୃହୀତ (ବିଧାତାର ସମ୍ବିଧାନ ପର୍ଯ୍ୟନ୍ତ) । ଏଇଥିରୁ ''ସମାଜର'' (ବ୍ୟକ୍ତିମାନଙ୍କର ସମାହାର ଅର୍ଥରେ) ଅନ୍ତରୀଣ ଆତ୍ମିକ ନିର୍ଯ୍ୟାସ ଖୋଜା ଚାଲିଛି (ଏହାକୁ ତାତ୍ତ୍ୱିକ କ୍ଷେତ୍ରରେ 'ଏସେନ୍‌ସିଆଲିଜିମ୍' କୁହାଯାଉଛି) । ତେଣୁ ''ସଂସ୍କୃତି'' ଗୋଟିଏ ନିର୍ଦ୍ଦିଷ୍ଟ ସମୟର, ଏକ ନିର୍ଦ୍ଦିଷ୍ଟ ସମାଜର ପୁଣି ଏକ ନିର୍ଦ୍ଦିଷ୍ଟ 'ରାଷ୍ଟ୍ର'ର ବିଚାରବୋଧ ପାଇଁ ତାତ୍ତ୍ୱିକତାର ଅନୁସନ୍ଧାନରେ ବହୁ ଦ୍ୱାର ଉନ୍ମୁକ୍ତ କରିଦେଲା । ଏହା ପୁଣି ନିର୍ଦ୍ଦିଷ୍ଟ ବ୍ୟକ୍ତି (ବା କଳାକାର, ଲେଖକର) ର କୃତି ଓ ତାହାର ଉତ୍ତରଣର ମଧ୍ୟ ଆଲୋଚ୍ୟ ବିଷୟ ହେଲା । ପୁଣି ଏହା ମଧ୍ୟ 'ବୌଦ୍ଧିକ ବିକାଶ'ର ଧାରାକୁ ବୁଝାଇଲା - ଏଇଥିରୁ ଆମ ଭାଷାରେ ''ବିଦଗ୍ଧ'' ଓ ''ଲୋକ'' ସଂସ୍କୃତି/ସାହିତ୍ୟର କଳନା ହେଲା । ପୁଣି ଏହା 'ବ୍ୟାକରଣ ସିଦ୍ଧ', ବ୍ୟାକରଣ ହୀନ, ପୁଣି 'ସୁପ୍ତ ବ୍ୟାକରଣ'ର ଅନୁସନ୍ଧାନରେ ବ୍ରତୀ ହେଲା । ଏଇଥିରୁ ପୁଣି କ୍ରିକେଟ ସଂସ୍କୃତି, ଚଳଚ୍ଚିତ୍ରର ସଂସ୍କୃତି, ଗଣମାଧ୍ୟମର ସଂସ୍କୃତି, ପ୍ରଶାସନର ସଂସ୍କୃତି ଆଦି ଅସଂଖ୍ୟ ଧାରା ସୃଷ୍ଟି ହେଲା । ପୁଣି ଏହା ପ୍ରାଚୀନ, ମଧ୍ୟଯୁଗୀୟ, ଆଧୁନିକ, ଆଧୁନିକୋତ୍ତର (ପରାଧୁନିକ), ସଂରଚନାବାଦୀ, ସଂରଚନାବାଦୋତ୍ତର ଆଦିର ସଂଜ୍ଞା ଭିତରେ ଆପଣା ଛାଏଁ ସ୍ଥାନ

ନିରୂପଣ କରିନେଲା । ଏଇଥିରୁ ''ଚିନ୍ତନର ବିଦ୍ୟାଳୟ'' (ସ୍କୁଲ୍ ଅଫ୍ ଥଟ୍) ସୃଷ୍ଟି ହେଲା—ଯେପରି ଫ୍ରଏଡ଼ୀୟ, ମାର୍କ୍ସୀୟ, ଡ଼ାରଉଇନୀୟ ଓ ଭାରତରେ 'ଗାନ୍ଧିୟାନ' ଆଦି ।

ଗତ ତିନି ଶତାବ୍ଦୀ ମଧ୍ୟରେ ଏହି ''ସଂସ୍କୃତି'' ଶବ୍ଦର (ଓ ପ୍ରତ୍ୟୟର) ଅର୍ଥ ବୁଝିବାକୁ ଅନେକ ତାତ୍ତ୍ୱିକତାର ଚିନ୍ତକ ('ୟୁରୋପୀୟ ବ୍ୟବହାର') ଉପରେ ବିଶ୍ଳେଷଣାତ୍ମକ ସନ୍ଦର୍ଭ ଲେଖିଛନ୍ତି । ସେମାନଙ୍କ ମଧ୍ୟରେ ରେମଣ୍ଡ ଉଇଲିୟମସ୍‌ଙ୍କର 'ଆଲୋଚନା'କୁ ଅଗ୍ରାଧିକାର ଦିଆଯାଇଥାଏ । ଉଇଲିୟମସ୍‌ଙ୍କର ଧାରଣା ହେଉଛି ଯେ ଉନବିଂଶ ଶତାବ୍ଦୀରେ ଶେଷ ଭାଗରେ ଓ ବିଂଶ ଶତାବ୍ଦୀରେ 'ସଂସ୍କୃତି' ଶବ୍ଦ ଓ ପ୍ରତ୍ୟୟର ବ୍ୟବହାର କ୍ଷେତ୍ରରେ ବ୍ୟାପକତା ଲାଭ କରିଛି । ଏହା ସାହିତ୍ୟ, ସଂଗୀତ, ଚାରୁକଳା, ସ୍ଥାପତ୍ୟ, ନାଟକ ଓ ଚଳଚ୍ଚିତ୍ର କ୍ଷେତ୍ରରେ ବ୍ୟବହାର କରାଯାଉଛି । ତେଣୁ ଏହି ''ଶବ୍ଦ'' ବା 'ପ୍ରତ୍ୟୟ', ପ୍ରତ୍ୟେକ କ୍ଷେତ୍ରରେ ବିଭିନ୍ନ ଭାବରେ ଓ 'ଅର୍ଥ'ରେ ବ୍ୟବହୃତ ହେଉଛି । ପାରଂପରିକତା ଦୃଷ୍ଟିରୁ ଏହା କେତେକ ଶାସ୍ତ୍ରୀୟ ସିଦ୍ଧାନ୍ତ (କାନୋନିକାଲ୍ ଟେକ୍ସ୍ଟ) ଅନୁଯାୟୀ ଗୃହୀତ ହୋଇ ଆସିଛି । ଏହାକୁ ଉଚ୍ଚ ସଂସ୍କୃତି (ଆମର ଯେପରି 'ବିଦଗ୍ଧ') ଓ ବାଣିଜ୍ୟିକ ସ୍ତରରେ ଓ ଲୋକପ୍ରିୟ କଳା କ୍ଷେତ୍ରରେ ଏହାକୁ 'ନୀଚ' ବା ଗଣସଂସ୍କୃତି (ମର୍କାଣ୍ଟାଇଲ୍ କଲ୍‌ଚର୍ ବା ଲୋ କଲ୍‌ଚର୍ ବା ପାଶ୍ଚାତ୍ୟ ମାନବ ବିଜ୍ଞାନୀଙ୍କ କ୍ଷେତ୍ରରେ ଏହା ମହାନ୍ (ଗ୍ରେଟ୍) ଓ କ୍ଷୁଦ୍ର (ଲିଟିଲ୍) ସଂସ୍କୃତି ଭାବରେ ବୁଝି ବୁଝାଇବାକୁ ଚେଷ୍ଟା କରାଯାଇଛି । ଏହି ପ୍ରକାରର ବିଭକ୍ତିକରଣ ଯୋଗୁଁ ହିଁ ଆମେ ଆମ ସଂସ୍କୃତିରେ ଏହାକୁ ବିଦଗ୍ଧ/ଲୋକ, ବଡ଼/ସାନ, ଶାସ୍ତ୍ରୀୟ/ଦେଶୀ ଭାବରେ ବିଚାର କରି ଆସିଛୁ (ମନେ ହେଉଛି ଇଂରାଜୀ ଭାଷା ସଂସ୍କୃତିର ପ୍ରଭାବରେ ଏହା ହୋଇଥିବା ସମ୍ଭବ) ।

ଏହି ପ୍ରକାର ଧାରଣାରୁ 'ଆମର ମାନସିକତା'ରେ (ବେଶଭୂଷା, ଚଳଣୀ, ଖାଦ୍ୟପେୟ ଆଦି ସବୁ କ୍ଷେତ୍ରରେ) ଏହା ଏକ ସ୍ଥାୟୀ ଆସନ ଗ୍ରହଣ କରି ସାରିଛି । ସେଇଥିରୁ ବିଂଶ ଶତାବ୍ଦୀରେ ଆମର ''ଉପଭୋକ୍ତା ସମାଜ'' (ଯାହା ଏବେ ପ୍ରାଧାନ୍ୟ ଲାଭ କରିଛି) ରେ ଗଣଙ୍କ ପ୍ରତି ଓ ଶୈଳ୍ପିକ ସମାଜ (ଇଣ୍ଡଷ୍ଟ୍ରିଆଲ୍ ସୋସାଇଟି) ମଧ୍ୟରେ ବିଭେଦ ସୃଷ୍ଟି ହୋଇଛି । ତେଣୁ ''ଅର୍ଥନୈତିକ ପ୍ରଗତି''ର ଲକ୍ଷ୍ୟ ନେଇ ଆମର ଚିନ୍ତା କ୍ଷେତ୍ରରେ (ତଥାକଥିତ ଯୋଜନା ବିଶାରଦ, ଅର୍ଥନୀତିର ଚିନ୍ତକମାନଙ୍କ ମଧ୍ୟରେ ଓ ପାଶ୍ଚାତ୍ୟ ଜଗତରେ ''ପ୍ରକୃତିପ୍ରେମୀ'' ନିର୍ଦ୍ଦିଷ୍ଟ ଗଣ ଓ

ଅତୀତପ୍ରେମୀ କମ୍ ଚିନ୍ତକଙ୍କ କ୍ଷେତ୍ରରେ) ଏ ସଂପର୍କୀୟ ତର୍କ-ବିତର୍କ ଚାଲୁ ରହିଛି । ଭାରତବର୍ଷରେ ତେଣୁ ଏହି ତର୍କ-ବିତର୍କ କ୍ଷେତ୍ରରେ ଗାନ୍ଧିଜୀଙ୍କର ଚିନ୍ତନ ସ୍ୱାଭାବିକ ଭାବରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କରି ସାରିଛି —ବାମପନ୍ଥୀ, ପୁଂଜିବାଦୀ ଓ ମାର୍କ୍ସୀୟ ଚିନ୍ତକଙ୍କର ''ପ୍ରତିପକ୍ଷ'' ଭାବରେ । ଏହାକୁ ମୋଟାମୋଟି ଭାବରେ ପରସ୍ପରର ବିରୋଧୀ ଗୋଷ୍ଠୀ ଭାବରେ ହିଁ ଗ୍ରହଣ କରାଯାଇଛି । ଏଇଥିରୁ ମନେ ହେଉଛି ଯେ ଏହି ଚିନ୍ତକମାନେ ଓ ତତ୍ତ୍ୱଦର୍ଶୀମାନେ ''ସଂସ୍କୃତି''ର, ''କାଳ''କୁ (ସମୟ) ବର୍ଣ୍ଣନା କରିବାକୁ ଚେଷ୍ଟା କରି ଆସିଛନ୍ତି । ତେଣୁ ବସ୍ତୁବାଦୀ ସମାଜ ଓ ସଭ୍ୟତାର, ''ସଂସ୍କୃତି''ର ଯେଉଁମାନେ ବିଶ୍ଳେଷକ, ସେମାନେ 'ସଂସ୍କୃତି'ର ପ୍ରବହମାନତା କ୍ଷେତ୍ରରେ ଏହାର ପାରଂପରିକ 'ନୈତିକ ଓ ଆଧ୍ୟାତ୍ମିକ' (ସ୍ପିରିଚୁଆଲ୍) ଅର୍ଥରେ ''କଳାକୃତିକୁ'' ଓ ବଛାବଛା ''ସାହିତ୍ୟକୃତି''କୁ ଯାନ୍ତ୍ରିକ ଓ ବସ୍ତୁବାଦୀ ଶିଳ୍ପ ସମାଜର ପ୍ରତିପକ୍ଷ ଭାବରେ ବିଚାର କରୁଛନ୍ତି (ଯେପରି କବି ଗଡ଼ନାୟକ : ଯନ୍ତ୍ର ତତେ କି 'ମନ୍ତ୍ର' ଦେଇଛି 'ମାଟିର ମଣିଷ' ଆରେ/ମୁଗ୍ଧ ତୋହର ଚିତ୍ତଗହନେ 'ଚିନ୍ତି' ପାରୁନୁ ବାରେ/ ଅନାଅନା 'ଫେରି' ଥରେ ମଳିନା ଏ 'ମାଟି' ପରେ ) ।

ତେଣୁ ଇଂରେଜୀ ସାହିତ୍ୟର ପରଂପରାରେ ମାଥ୍ୟୁ ଆର୍‌ନଲଡ୍, ଏଫ୍.ଆର. ଲିଭିସ୍ ଓ ଟି.ଏସ୍ ଇଲିଅଟ୍ 'ସଂସ୍କୃତି'କୁ ଏକ ପ୍ରସାରଣଶୀଳ ଉଦାରବାଦୀ କିମ୍ବା ରକ୍ଷଣଶୀଳ 'ଭାବ-ବିଜ୍ଞାନ' (ଆଇଡ଼ିଓଲୋଜି) ଭାବରେ ଚିତ୍ରିତ କରିଛନ୍ତି । ଯେପରି ଇଲିୟଟ ଦତ୍ତଂ /'ଦମ୍ୟତଂ'/ ଦୟଧ୍ୱଂ ଭଳି ଉପନିଷଦୟୀ ଉଚ୍ଚାରଣରେ ତାଙ୍କର କାବ୍ୟକୁ ଶେଷ କରିଛନ୍ତି । ସେହିପରି ଥିଓଡ଼ର୍ ଆଡ୍ରୋନୋ (ଜର୍ମାନୀର ଫ୍ରାଙ୍କଫୋର୍ଟ ସ୍କୁଲର ଚିନ୍ତକ) ମାର୍କ୍ସିଷ୍ଟମାନଙ୍କର 'ଗଣସମାଜ' ଓ ଅର୍ଥନୈତିକ ଚିନ୍ତନ ଜନିତ' ସଂସ୍କୃତିର ବିରୋଧରେ ଉଭା ହୋଇଛନ୍ତି । ଏଇଥିରୁ ମନେ ହେଉଛି 'ସଂସ୍କୃତି'ର ତାତ୍ତ୍ୱିକତାର ଅନୁସଂଧାନ କ୍ଷେତ୍ରରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ପ୍ରାକୃତିକ (ନେଚୁରାଲ୍) ଓ ଶୈଳ୍ପିକ (ଇଣ୍ଡଷ୍ଟ୍ରିଆଲ୍) ମୂଲ୍ୟବୋଧ କ୍ଷେତ୍ରରେ ଥିବା ଚିନ୍ତନ ମାଧ୍ୟମରେ 'ସାଂସ୍କୃତିକ' ଉନ୍ନତି ଓ ଅବନତି ବିଷୟରେ ଧ୍ୟାନ ଦେଇଛନ୍ତି । ବୈଜ୍ଞାନିକ ଉଦ୍ଭାବନର ଲକ୍ଷ୍ୟ ଭାବରେ ଯଦି 'କନ୍‌କ୍ୱେଷ୍ଟ ଅଫ୍ ନେଚର୍' କଥା (ପ୍ରକୃତିକୁ ଅବଦମିତ କରିବା) ଆମେ ଶିଖିଥିଲୁ, ଏବେ 'ପ୍ରକୃତିକୁ ପ୍ରତିପାଳନ କରିବା' (ନର୍‌ଚର୍ ନେଚର୍) ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ଏକ ଚର୍ଚ୍ଚାର ପରଂପରା ସୃଷ୍ଟି କରି ସାରିଛନ୍ତି । ଏହି କ୍ଷେତ୍ରରେ ସ୍ୱର ଉତ୍ତୋଳନକାରୀଙ୍କ ମଧ୍ୟରେ ଗାନ୍ଧିଜୀ, ମାର୍ଟିନ ଲୁଥର କିଂଙ୍ଗ୍ ଠାରୁ ଆରମ୍ଭ କରି ଏବେ 'ପରିବେଶବିଦ୍‌ମାନଙ୍କ' ଦ୍ୱାରା ଏହି ଚିନ୍ତନ କ୍ରମଶଃ ଜୀବନ ଓ

ଜୀବିକାର ଅନ୍ୱେଷଣରେ ଜନମାନସକୁ 'ଆକୃଷ୍ଟ' କରୁଥିବା ବେଳେ ''ଶିଳ୍ପ ଜଗତର ଅର୍ଥନୈତିକ ପ୍ରଗତି''ର ଆହ୍ୱାନ ଯୋଜନାଧୀଶ ଓ ଅର୍ଥନୀତିର ବିକାଶ ଆଭିମୁଖ୍ୟ ନେଇଥିବା ପ୍ରଶାସକମାନଙ୍କ ମଧ୍ୟରେ ଦେଖାଦେଇଛି । ସେଇଥିପାଇଁ 'କ୍ଲାସ୍' ଓ 'ମାସ୍' ମଧ୍ୟରେ ଏକ 'ରଣଭୂମି' ସୃଷ୍ଟି ହୋଇ ସାରିଛି । ଏହି ପରିପ୍ରେକ୍ଷୀରେ ''ଲୋକପ୍ରିୟକଳା'' (ଉଦାହରଣ ସ୍ୱରୂପ ଅକ୍ଷୟ ମହାନ୍ତିଙ୍କ ସଂଗୀତ ସୃଷ୍ଟି), ଜନମାନସକୁ ଆକୃଷ୍ଟ କରୁଛି । ସେହିଭଳି ଭାବରେ ନୃତ୍ୟକ୍ଷେତ୍ରରେ 'ଶାସ୍ତ୍ରୀୟ ନୃତ୍ୟ' (ଓଡ଼ିଶୀ) ମଧ୍ୟରେ ରୂପ, ଭାଷା ବିନ୍ୟାସ, ଅଳଂକରଣ ଶୈଳୀ, ଛନ୍ଦ ଆଦି କ୍ଷେତ୍ରରେ ଏହାକୁ ''ସରଳ'', ଚମକପ୍ରଦ କରିବା ଓ ଏହାର ଅର୍ଥରେ ମଧ୍ୟ ଅର୍ଥ ସଂପ୍ରସାରଣ ବା ଅର୍ଥବ୍ୟାପ୍ତି ଘଟୁଛି । ତେଣୁ ''ଶାସ୍ତ୍ରୀୟ'' ଚର୍ଚ୍ଚା କ୍ଷେତ୍ରରେ ଯେପରି ବିଭିନ୍ନତା ରହିଛି (ଉଦାହରଣ ସ୍ୱରୂପ ''ଭଗବଦ୍‌ଗୀତା''ର ମୁଖ୍ୟ ଛ' ଜଣେ ବ୍ୟାଖ୍ୟାକାରଙ୍କ ଛଡ଼ା ବିଭିନ୍ନ ଭାଷାରେ କେତେ ଯେ ବ୍ୟାଖ୍ୟା ହେଲାଣି, ତାହା କହିହେବ ନାହିଁ ।) ସେହିଭଳି ଲୋକପ୍ରିୟ (ପପ୍) ସଂସ୍କୃତିରେ ମଧ୍ୟ ପରିବର୍ତ୍ତନ ଘଟୁଛି । ଏହା ଫଳରେ ବ୍ୟାଖ୍ୟାକାରଙ୍କ ମଧ୍ୟରେ ''ପାଠ'' (ଟେକ୍ସଟ୍)ର ନୂତନ ସଂଜ୍ଞା ଓ ''ମୂଲ୍ୟାୟନ''ର ବିଭିନ୍ନତା ମଧ୍ୟ ଲକ୍ଷ୍ୟ କରାଯାଇ ପାରୁଛି । ଧରନ୍ତୁ ଜନ୍ମନା ଜାୟତେ ଶୂଦ୍ର, ସଂସ୍କାରାତ୍ 'ବିପ୍ର' ଉଚ୍ୟତେ - ଏଠି ଜନ୍ମଜାତକରୁ ପୁଣି ''ସଂସ୍କାର'' ଦେଇ 'ଶୂଦ୍ର' ବି 'ବିପ୍ର' ହେଉଛି - ଏ ''ବିପ୍ର'' ପୁଣି କିଏ ? ଯେ କଣ ବ୍ରାହ୍ମଣ ନା ଗୁରୁ ନା ପୁରୋହିତ । ପୁଣି ''ସତ୍ୟମେକଂ ବିପ୍ରା ବହୁଧା ବଦନ୍ତି — ତେଣୁ ''ଏକ'' ଓ ''ବହୁଧା'' ଭିତରେ ସିଙ୍ଗୁଲାର ଓ ପ୍ଲୁରାଲିଷ୍ଟିକ୍, ୟୁନିଫାଏଡ୍, ଡ଼ାଇଭରସିଫାଏଡ୍ ସଂସ୍କୃତି କଥା କୁହାଯାଇ ନାହିଁକି ? ପୁଣି ଏହା କେଉଁ 'ମତବାଦ' ଉପରେ ପ୍ରତିଷ୍ଠିତ ବା କେଉଁ ମତବାଦକୁ ଧାରଣ କରି ପୁଷ୍ଟ । ତେଣୁ ସମାଜର 'ସାମାଜିକ' ଓ 'ଅର୍ଥନୈତିକ' ଅବସ୍ଥା ଉପରେ 'ସଂସ୍କୃତି'ର ବ୍ୟାଖ୍ୟା ଓ ଆଦର/ଅନାଦରର ଭାବଜଗତ ସୃଷ୍ଟି ହେଉଛି । ତେଣୁ 'ମୀମାଂସକ' ଓ 'ତାତ୍ତ୍ୱିକ' ପଣ୍ଡିତମାନେ 'ସଂସ୍କୃତିର ତାତ୍ତ୍ୱିକତା'ରେ ଯେଉଁ ରୂପାନ୍ତର ଘଟୁଛି, ତାହାକୁ ଅର୍ଥନୀତି, ଉଚ୍ଚ/ନୀଚ ସଂସ୍କୃତି, ମହାନ୍ ଓ କ୍ଷୁଦ୍ର ଚିନ୍ତନ ଓ 'ଭାବ-ବିଜ୍ଞାନ' (ଆଇଡ଼ିଓଲୋଜି)ର ଆଧାର ଉପରେ ନିର୍ଭର କରି 'ତାତ୍ତ୍ୱିକ' ବ୍ୟାଖ୍ୟାରେ 'କାଳାତିପାତ' କରୁଛନ୍ତି ।

ତେଣୁ 'ସଂସ୍କୃତି'ର 'ତାତ୍ତ୍ୱିକତା' ଅଧ୍ୟୟନ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ତତ୍ତ୍ୱବିଦ୍ ଏକ ନିର୍ଦ୍ଦିଷ୍ଟ ବ୍ୟାବହାରିକ ସଂଜ୍ଞା (ଅପେରସନାଲ୍ ଡ଼େଫିନେସନ୍) ଉପରେ ନିର୍ଭର କରିବାକୁ ବାଧ୍ୟ । ଏହା ସହିତ କେଉଁ 'ମାର୍ଗ' (ମେଥଡ୍) ଜରିଆରେ ଓ ପ୍ରଶିକ୍ଷଣର କେଉଁ 'ବିଷୟ-ଶୃଙ୍ଖଳା' (ଏକାଡ଼େମିକ୍ ଡ଼ିସିପ୍ଲିନ୍ - ଯାହାକୁ ଆମେ କେବଳ ସବ୍‌ଜେକ୍ଟ

ବା ବିଷୟ କହୁଛୁ ଓ ବୁଝୁଛୁ) କୁ ବ୍ୟବହାର କରିବାକୁ ହେବ ତାହା ମଧ୍ୟ ବିଚାରକୁ ନେବାକୁ ହେବ । ଏହା ଦର୍ଶନ, ଭାଷାବିଜ୍ଞାନ, ଶିକ୍ଷା ହୋଇପାରେ କିମ୍ବା ମାନବବିଜ୍ଞାନ (ଆନ୍ଥ୍ରୋପୋଲୋଜି), ସମାଜବିଜ୍ଞାନ, ସାହିତ୍ୟ, ଗଣ ମାଧ୍ୟମର ''ବିଷୟ ଶୃଙ୍ଖଳା'' ଓ ସୀମିତତା ଉପରେ ନିର୍ଭର କରେ । କିମ୍ବା ଏହା ମଧ୍ୟ ୨ /୩ଟି ବିଷୟ ଶୃଙ୍ଖଳାରୁ ଉପାଦାନ ବା ମାର୍ଗ ଗ୍ରହଣ କରିପାରେ । ଏହା ଫଳରେ ''ସାଂସ୍କୃତିକ ଅଧ୍ୟୟନ''କୁ ଯଦି ଏକ ସ୍ୱତନ୍ତ୍ର ''ବିଷୟ ଶୃଙ୍ଖଳା'' ଭାବରେ ଗ୍ରହଣ କରାଯାଏ, ତେବେ ଏହା ମଧ୍ୟ ''ବର୍ଣ୍ଣନାତ୍ମକ'' ବିଶ୍ଳେଷଣାତ୍ମକ 'ମୂଲ୍ୟାୟନଭିତ୍ତିକ' (ଇଭାଲୁଏଟିଭ୍) ହୋଇପାରେ । ତେଣୁ ଏକ 'ଗବେଷକ' ପକ୍ଷରେ ତା'ର ଗବେଷଣା ବିଷୟରେ ''ମୂଲ୍ୟାୟନ-ଭିତ୍ତିକ'' ଓ ଏହାର ''ଅର୍ଥ ବ୍ୟାଖ୍ୟା''ରୁ ଦୂରେଇ ରହିବା ସମ୍ଭବ ନୁହେଁ । ଏଇଠି ରେମଣ୍ଡ ଉଇଲିୟମ୍‌ସଙ୍କର ସଂଜ୍ଞାନୁଯାୟୀ ସଂସ୍କୃତି ହେଉଛି - ''ଏ ହୋଲ୍ ୱେ ଅଫ୍ ଲାଇଫ୍ ଅଫ୍ ଏ ସୋସିଆଲ୍ ଗ୍ରୁପ୍ ଅଫ୍ ହୋଲ୍ ସୋସାଇଟି'' - ଅର୍ଥାତ ''ଜୀବନର ସାମଗ୍ରିକ ମାର୍ଗ'' ପୁଣି ଏକ ''ସାମାଜିକ ଗୋଷ୍ଠୀ'' ଓ ''ସଂପୂର୍ଣ୍ଣ ସମାଜ'' । ଏହାକୁ ମଧ୍ୟ ଗବେଷଣା କ୍ଷେତ୍ରରେ ସୂଚିତ କରିବାକୁ ପଡ଼ିବ ଓ ଏହାର ଅର୍ଥାତ 'ଗବେଷଣା'ର ସୀମା ମଧ୍ୟ ନିର୍ଦ୍ଧାରଣ କରିବାକୁ ପଡ଼ିବ । ପୁଣି କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀର ''ସଂସ୍କୃତି'' ଆଲୋଚନା କଲାବେଳେ ସେହି 'ସଂସ୍କୃତି'ର ଧାରକ, ପ୍ରସାରକ ଓ ସେମାନଙ୍କର ଦୃଷ୍ଟିଭଙ୍ଗୀ ପ୍ରତି ସଚେତନ, ବୌଦ୍ଧିକ ତଥା 'ସୃଜନାତ୍ମକ ଶକ୍ତି' ସଂପର୍କରେ ମଧ୍ୟ ବିଚାରଣା ଆବଶ୍ୟକ । ଗବେଷକ ମଧ୍ୟ ଏହି ପର୍ଯ୍ୟାୟରେ ନିଜର ଅଭିଜ୍ଞତା (ଗ୍ରନ୍ଥାଗାରରେ ହେଉ ବା କ୍ଷେତ୍ରଜ ହେଉ) ଓ ଅନୁଭବକୁ ମଧ୍ୟ ବିଶ୍ଳେଷଣ କରିବା ଆବଶ୍ୟକ । ତେଣୁ 'ସଂସ୍କୃତି'କୁ ''ଜୀବନ ଯାପନର ମାର୍ଗ'' କୁହାଯିବ ନା ''ଜୀବନଯାପନ ପାଇଁ ନିରନ୍ତର ସଂଗ୍ରାମ'' (ବାମପନ୍ଥୀ ଚିନ୍ତାଧାରା) କୁହାଯିବ- କେଉଁ ଅର୍ଥରେ ଜୀବନକୁ, ସମାଜକୁଓ ସର୍ଜନାତ୍ମକ ପ୍ରକ୍ରିୟାକୁ ବିଶ୍ଳେଷଣ କରାଯିବ - ତାହା ମୋଟାମୋଟି ଭାବରେ 'ସଂସ୍କୃତି'ର 'ତାତ୍ତ୍ୱିକତା' କ୍ଷେତ୍ରରେ 'କେଉଁ ତତ୍ତ୍ୱ' ବିଶ୍ଳେଷଣକାରୀକୁ ଆକୃଷ୍ଟ କରିଛି - ସେହି ଦୃଷ୍ଟିଭଙ୍ଗୀରୁ ହିଁ ଆଲୋଚନାର ମାର୍ଗ ସ୍ଥିର ହୋଇଥାଏ ଓ ସେଇଥିରୁ ''ଅଭିଚର୍ଚ୍ଚା'' (ଡ଼ିସ୍‌କୋର୍ସ)ର ଧାରା ସୃଷ୍ଟି ହୁଏ । ଏହା କେତେବେଳେ ଓ କେତେକ ସମୟ ପର୍ଯ୍ୟନ୍ତ ଅନୁସୃତ ହୁଏ, ଆଦୃତ ହୁଏ, ପୁଣି ବେଳେବେଳେ ଅଳ୍ପ କିଛି ବର୍ଷ ଭିତରେ ଏହା ''ବିସ୍ମୃତି''ର ଅତଳ ଗହ୍ୱରକୁ ଚାଲିଯାଏ (ଯେପରି ପଶ୍ଚିମଜଗତରେ ଷ୍ଟ୍ରକଚରାଲିଜିମ୍‌ର ଆବିର୍ଭାବ ଓ ବିଲୟ ପ୍ରାୟ ୨୦ବର୍ଷର ଇତିହାସ) ।

ତେଣୁ ଏବେ ବି ''ତାତ୍ତ୍ୱିକତା'' କ୍ଷେତ୍ରରେ ଆମେ 'ରାଷ୍ଟ୍ରୀୟ ସଂସ୍କୃତି', 'ଆଞ୍ଚଳିକ ସଂସ୍କୃତି', ଗ୍ରାମ୍ୟ ସଂସ୍କୃତି, ସହରୀ ସଂସ୍କୃତି ଇତ୍ୟାଦି କଥା କହିଲାବେଳେ 'ଇତିହାସ'ର କେତୋଟି ଘଟଣାକୁ ନେଇ ବା ଆଞ୍ଚଳିକ ସୀମାର ଏକ କାଳ୍ପନିକ ଚୌହଦୀ ମଧ୍ୟରେ ''ସଂସ୍କୃତି''ର ବର୍ଣ୍ଣନା କରୁଛୁ ସିନା, 'ସଂସ୍କୃତି'ର (ସେ ବି 'ବ୍ୟକ୍ତି'ର ହୋଇପାରେ, ଲିଙ୍ଗଭେଦରେ ପୁରୁଷ ନାରୀ ସଂସ୍କୃତି ହୋଇପାରେ) ତାତ୍ତ୍ୱିକ ଦିଗଟିର ପରିସୀମା ଭିତରେ ସମୀକ୍ଷକ ନିଜକୁ ସଂଯତ ରଖି ପାରୁନାହାନ୍ତି । ଯେ କୌଣସି 'ସମୀକ୍ଷା'ରେ ସମୀକ୍ଷକ ନିଜ ବକ୍ତବ୍ୟର/ବା 'ଲେଖା'ର ଏକ 'ସୀମାରେଖା' ବା 'ସୀମା ବଳୟ' ଭିତରେ 'ମାର୍ଗଦର୍ଶୀ' ଓ ତତ୍ତ୍ୱବିଦ୍‌ଙ୍କ ଆଲୋଚନାର ମାର୍ଗକୁ ଭିତ୍ତିକରି, 'ସଂସ୍କୃତି'ର 'ବର୍ଣ୍ଣନାତ୍ମକ' ଦିଗ ପ୍ରତି ଧ୍ୟାନ ନଦେଇ 'ତତ୍ତ୍ୱ'ର ଅନୁସରଣ କରିବାକୁ ଚେଷ୍ଟା କରୁଛନ୍ତି । ଏହାର ''ଅର୍ଥ ନୁହେଁ'' ଯେ ସମୀକ୍ଷକ କେବଳ ଏକ ଅନୁସରଣକାରୀ ହୋଇ ରହିବେ । କିନ୍ତୁ ଜଣେ 'ତତ୍ତ୍ୱବିଦ୍' ଭାବରେ ନିଜକୁ ଉପସ୍ଥାପିତ କରିବାକୁ ଆଗ୍ରହ ଥିଲେ 'ପୂର୍ବବର୍ତ୍ତୀ ତତ୍ତ୍ୱବିଦ୍'ଙ୍କର ଯୁକ୍ତିକୁ ଗ୍ରହଣ/ଖଣ୍ଡନ କରି, ନିଜର ସ୍ୱକୀୟ ସ୍ଥାନ ମଧ୍ୟ ସ୍ଥିର କରିପାରିବେ । ଏ ଦିଗରେ ଓଡ଼ିଆ 'ସମୀକ୍ଷା ଶାସ୍ତ୍ର'ରେ ସେପରି ଚେଷ୍ଟା ହୋଇଥିଲେ, କୌଣସି ମାର୍ଗଦର୍ଶୀଙ୍କ ଆଲୋଚନା ଥିଲେ ତାହା ମୋ ଦୃଷ୍ଟିକୁ ଆସିନାହିଁ ('ମୋ ଦୃଷ୍ଟି'କୁ ତାହା ଆଣିପାରିଲେ ଖୁସି ହେବି) ।

ଏହି 'ପ୍ରବନ୍ଧ' ଲେଖିବାର ଉଦ୍ଦେଶ୍ୟ ହେଉଛି — ଓଡ଼ିଆରେ ଯେଉଁମାନେ 'ସଂସ୍କୃତି' ସଂପର୍କରେ ଆଲୋଚନା କରୁଛନ୍ତି, ଅଭିଚର୍ଚ୍ଚା (ଡ଼ିସ୍‌କୋର୍ସ) କ୍ଷେତ୍ରରେ 'ତାତ୍ତ୍ୱିକତା' ପ୍ରତି ଧ୍ୟାନ ଦେବା ଆବଶ୍ୟକ । ଯେପରି ମୁଁ ଅନେକ ଲେଖାର ମୂଳରୁ କହିରଖେ ଯେ ''ଗାନ୍ଧିବାଦୀ ଦୃଷ୍ଟିକୋଣରୁ'' ମୁଁ ଏହା ଲେଖୁଛି — ବେଳେ ବେଳେ ପ୍ରଶ୍ନ ଉଠେ, 'କାହିଁକି' ମାର୍କ୍ସୀୟ ବା 'ଫ୍ରଏଡ଼ୀୟ' ଦୃଷ୍ଟିକୋଣରୁ ଆଲୋଚନା କରୁନାହାନ୍ତି । ତା'ର ସ୍ପଷ୍ଟ ଉତ୍ତର ହେଉଛି ଯେ 'ଗାନ୍ଧୀଙ୍କର ତାତ୍ତ୍ୱିକତା'ର ସୀମାର ବାହାରକୁ ଯିବା ପାଇଁ ମୋର ସମୟ ନାହିଁ ଓ ଆଗ୍ରହ ବି ସୃଷ୍ଟି ହେଉନାହିଁ ।

'ସମୀକ୍ଷା ଓ ଅଭିଚର୍ଚ୍ଚା'ର 'ପ୍ରଶିକ୍ଷଣ କ୍ଷେତ୍ର'ରେ ଏ 'ତାତ୍ତ୍ୱିକତା'ର ଧାରା ପ୍ରବେଶ କରୁ ଏହା ମୋ'ର ବ୍ୟକ୍ତିଗତ ଆଗ୍ରହ ।



# ସମୀକ୍ଷା (Critique)

ଇଂରେଜୀ ବା ଅନ୍ୟାନ୍ୟ ପାଶ୍ଚାତ୍ୟ ସାହିତ୍ୟ/ସଂସ୍କୃତିରେ ''ପରିଭାଷା''କୁ ଯେପରି ''ପ୍ରତ୍ୟୟଗତ ତାତ୍ପର୍ଯ୍ୟ'' ଭାବରେ ବ୍ୟବହାର କରାଯାଇଛି -ଓଡ଼ିଶାର ସାହିତ୍ୟ/ସଂସ୍କୃତି ଜଗତରେ ସେଭଳି ପ୍ରାଧାନ୍ୟ ଦିଆଯାଇ ନାହିଁ । ଉଦାହରଣ ସ୍ୱରୂପ, ଆଲୋଚନା, ସମାଲୋଚନା, ସମୀକ୍ଷା, ବିମର୍ଶ, ଆଦି 'ପ୍ରତ୍ୟୟ' ମଧ୍ୟରେ ଅର୍ଥ ଦୃଷ୍ଟିରୁ ଓ ବ୍ୟାବହାରିକତା ପରିପ୍ରେକ୍ଷୀରେ 'ସୀମା' ନିର୍ଦ୍ଧାରଣ କରାଯାଇ ପାରିନାହିଁ । ଅନ୍ୟ ଭାଷାରେ କହିଲେ ''ପ୍ରତ୍ୟୟଗତ'' ''ମାନକ'' (Conceptual Standard) ତିଆରି ହୋଇପାରି ନାହିଁ । ଫଳରେ ପ୍ରତିବେଶୀ ସାହିତ୍ୟ ଓ ସଂସ୍କୃତିର ଚର୍ଚ୍ଚା ବିଶାରଦମାନେ ଆମଠାରୁ ବହୁ ଦୂର ଆଗେଇ ଯାଇଥିଲା ବେଳେ, ଏବେ ଆମର ସେ ଚେଷ୍ଟା ଆରମ୍ଭ ହୋଇଛି ମାତ୍ର ।

ଏହି ଲେଖାରେ "Critique" ର ପରିଭାଷା ଭାବରେ 'ସମୀକ୍ଷା' ପ୍ରତ୍ୟୟର ଆଲୋଚନା କରାଯାଉଛି । ସଂସ୍କୃତ ସାହିତ୍ୟରେ ଓ ଅଭିଧାନରେ ଏସବୁ ଶବ୍ଦରାଜିର ପାର୍ଥକ୍ୟ ଦର୍ଶାଯାଇଥିଲେ ମଧ୍ୟ ଯେଉଁମାନେ ''ସାହିତ୍ୟ-ସମାଲୋଚକ'' ସେମାନେ ଏ ପାର୍ଥକ୍ୟକୁ ବିଚାରକୁ ନେଇ, ପାଶ୍ଚାତ୍ୟ ଜଗତରେ ବ୍ୟବହୃତ 'ପ୍ରତିଶବ୍ଦ' ଓ 'ପ୍ରତ୍ୟୟ'ର ବିଶେଷ ଆଲୋଚନା ପ୍ରତି ଦୃଷ୍ଟି ଦେଇନାହାନ୍ତି । ପ୍ରଶାସନ କ୍ଷେତ୍ରରେ ମଧ୍ୟ ଯେଉଁ ''ପରିଭାଷା ଶବ୍ଦକୋଷ'' ବା ''ଅଭିଧାନ'' ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇଛି, ବିଭିନ୍ନ ''ଶୈକ୍ଷିକ ଶୃଙ୍ଖଳା''ରେ ତାହାର ସଦୁପଯୋଗ କିପରି କରାଯାଇ ପାରିବ, ସେ ସମ୍ପର୍କରେ 'ପ୍ରଶିକ୍ଷଣ ବ୍ୟବସ୍ଥା' ନାହିଁ ।

ତେଣୁ ଏଠାରେ ଇଂରାଜୀରେ "Critique" କହିଲେ ଆମେ କ'ଣ ବୁଝୁ ଓ 'ଓଡ଼ିଆ'ରେ ''ସମୀକ୍ଷା'' ତାର ''ପାରିଭାଷିକ ପ୍ରତିଶବ୍ଦ'' ହୋଇ ପାରିବ କି ? -– ଏହି ପ୍ରଶ୍ନ ଉତ୍ଥାପନ କରାଯାଉଛି । ମୁଁ ସ୍ୱୀକାର କରି ନେଉଛି ଯେ ''ଓଡ଼ିଆ-ସାହିତ୍ୟ ସଂସ୍କୃତି'' କ୍ଷେତ୍ରରେ ଯଦି ସେପରି ''ମାର୍ଗଦର୍ଶୀ'' ଗ୍ରନ୍ଥ ରଚନା କରାଯାଇଥାଏ, ତାହା ମୋର ଦୃଷ୍ଟିଗୋଚର ହୋଇନାହିଁ । ଏପରି ଗ୍ରନ୍ଥ ରଚନା ହୋଇଥିଲେ, ମୁଁ ତାହା ବିଶ୍ଳେଷଣ କରିବାର ସୁଯୋଗ ଓ ସୁବିଧା ପାଇ ନଥିବାରୁ ସେଥିପାଇଁ କ୍ଷମା ମାଗି ନେଉଛି ।

ଏଠାରେ ''ସମୀକ୍ଷା'' କହିଲେ ଏକ ''ନିରପେକ୍ଷ'' ଦୃଷ୍ଟିଭଙ୍ଗୀ । ସେହି ଦୃଷ୍ଟିରୁ ପ୍ରାୟ "Critique" ଶବ୍ଦ ବ୍ୟବହାର ହୋଇଥାଏ ।

"Critique" (ସମୀକ୍ଷା) ଓ "Criticism" (ସମାଲୋଚନା) ଏହି ଦୁଇଟି ପ୍ରତ୍ୟୟ ମଧ୍ୟରେ ଏକ ପ୍ରଭେଦ ରହିଛି । 'ସମାଲୋଚନା' କ୍ଷେତ୍ରରେ ''ସମାଲୋଚକ''ର ପରିସର ବ୍ୟାପକ । 'ପାଠ୍ୟ'ର ବାହାରେ ଆନୁସଙ୍ଗିକ ବିଷୟକୁ ମଧ୍ୟ ଆଲୋଚନାର ପରିସର ମଧ୍ୟକୁ ଅଣାଯାଇପାରେ । କିଂତୁ ''ସମୀକ୍ଷା'' କ୍ଷେତ୍ରରେ ଏହା ସମ୍ଭବ ହେବାର କଥା ନୁହେଁ । ସମୀକ୍ଷକ, ନିର୍ଦ୍ଦିଷ୍ଟ ''ପାଠ''ର (Text) ପରିଧି ବା ଚୌହଦୀ ମଧ୍ୟରେ ଥିବା 'ବିରୋଧାଭାସ' ଓ ଏହି 'ପାଠ'ର ପ୍ରମୁଖ ''ନିର୍ଯ୍ୟାସ'' ଗୁଡ଼ିକୁ ସୂଚାଇଦେବା ହିଁ ''ସମୀକ୍ଷା'' 'ପ୍ରତ୍ୟୟ'ର ଅନ୍ତର୍ଗତ ।

ଏବେ 'ଜଗତିକରଣ' ଫଳରେ ବିଶ୍ୱର ବିଭିନ୍ନ ''ସାଂସ୍କୃତିକ ଅଞ୍ଚଳ''ରେ ''ସାଂସ୍କୃତିକ ଅଧ୍ୟୟନ'' ଏକ ନୂତନ ''ଶୈକ୍ଷିକ ଶୃଙ୍ଖଳା'' ଭାବରେ ଉଭା ହୋଇଛି । ତେଣୁ ଆମେ 'ସଂସ୍କୃତି' କଥା ଆଲୋଚନା କଲାବେଳେ, ଏହି ''ସମୀକ୍ଷା''ର ତାତ୍ତ୍ୱିକତା ସଂପର୍କରେ ଧ୍ୟାନ ଦେବାକୁ ହେବ । ''ସମୀକ୍ଷା'' ''ତର୍କ-ବିତର୍କ''ର ଉର୍ଦ୍ଧ୍ୱରେ ଏକ ''ତାତ୍ତ୍ୱିକତା'' ପ୍ରତିଷ୍ଠା କରିବାରେ ଆଗ୍ରହୀ । ନିଶ୍ଚିତ ଭାବରେ ଏହାର ପରିସୀମା ''ଶୈକ୍ଷିକ ଶୃଙ୍ଖଳା''ର ଲକ୍ଷ୍ୟ ମଧ୍ୟରେ ଆବଦ୍ଧ । ଏହା କହିବାର କାରଣ ହେଉଛି - ପ୍ରଥମେ ସମୀକ୍ଷାର ''ତାତ୍ତ୍ୱିକତା'' ସଂପର୍କରେ ''ଗବେଷକ'' ସୃଷ୍ଟି କରିବା । ସେମାନଙ୍କର କାର୍ଯ୍ୟ ହେବ ଯେ ଯେଉଁ ''ନୂତନ ପ୍ରତ୍ୟୟ'' ସବୁ ସୃଷ୍ଟି ହେଉଛି ଓ ଯାହା ଜ୍ଞାନ ଜଗତର ବ୍ୟାବହାରିକତା ଓ ''ଅର୍ଥବ୍ୟାପ୍ତିକୁ'' ଦୃଢ଼ କରିବା ତାହାକୁ ବୁଝି ''ସଂସ୍କୃତି''/ସଂସ୍କୃତି ମଧ୍ୟରେ ଭାବର ଆଦାନପ୍ରଦାନକୁ ସହଜସାଧ୍ୟ କରିବ । ଏହା ଅନୁକରଣ ସର୍ବସ୍ୱ ହେବନାହିଁ । ତେଣୁ ''ସମୀକ୍ଷା''କୁ ଅନ୍ୟ ସାହିତ୍ୟରେ/ ସଂସ୍କୃତିରେ କ'ଣ କୁହାଯାଇଛି / କରାଯାଉଛି (ଯେପରି Oral Communication, Action Program ଆଦିରେ) ତାହା ବୁଝିବା ସମ୍ଭବପର ହେବ । ଫଳରେ ''ସଂସ୍କୃତି'' ''ସଂସ୍କୃତି'' ମଧ୍ୟରେ ସହଯୋଗ ବୃଦ୍ଧି ପାଇବ । ପରସ୍ପର ମଧ୍ୟରେ ''ହୀନମନ୍ୟତା'' ବା ''ଅସୂୟା'' ଭାବ ଉଦ୍ରେକ ନାହିଁ । ତେଣୁ ଶାସ୍ତ୍ରଜ୍ଞାନ ଓ ଅନୁଭବର ଜ୍ଞାନ ମଧ୍ୟରେ ''ସମୀକ୍ଷା'' ଏକ ସେତୁ ନିର୍ମାଣ କରିପାରେ ।

ଏବେ ''ସଂସ୍କୃତି-ଅଧ୍ୟୟନ'' କେନ୍ଦ୍ରମାନଙ୍କ -ସଂପର୍କରେ କେତେକ ମତାମତ ଦେବା ଆବଶ୍ୟକ ମନେ କରୁଛି । ଯେହେତୁ ''ଓଡ଼ିଶା''ରେ ଏପରି ଏକ 'ବିଶ୍ୱବିଦ୍ୟାଳୟ' ପ୍ରତିଷ୍ଠା ପାଇ ସାରିଛି । ବିଶ୍ୱର ବିଭିନ୍ନ 'ରାଷ୍ଟ୍ର'ରେ ଯେଉଁ ''ସଂସ୍କୃତି-ଅଧ୍ୟୟନ କେନ୍ଦ୍ର'' ପ୍ରତିଷ୍ଠା ପାଇସାରିଛି (ପୁଣି ଓଡ଼ିଶାରେ ''ଭାଷା-ପ୍ରତିଷ୍ଠାନ'' ବି ଗଢ଼ା ସରିଛି) ସେଗୁଡ଼ିକ ''ରାଜନୈତିକ ଦଳ'' ଗୁଡ଼ିକର ''ଗବେଷଣା-ପ୍ରକଳ୍ପ'' । ଅର୍ଥାତ୍ ରାଜନୈତିକ କ୍ଷମତାଧରମାନେ 'ସଂସ୍କୃତି' କହିଲେ ଯାହା ବୁଝନ୍ତି ଓ ସେମାନଙ୍କର 'ମତ'କୁ ''ପ୍ରସାର କରିବା'' ଏହି କେନ୍ଦ୍ର ଗୁଡ଼ିକର ଲକ୍ଷ୍ୟ ଓ ଆଦର୍ଶ । କିଂତୁ ଏହା ମଧ୍ୟ ''ଶୈକ୍ଷିକ-ଶୃଙ୍ଖଳା'' ସମୂହର ''ତାତ୍ତ୍ୱିକତା'' ପରିପ୍ରେକ୍ଷୀରେ କରାଯାଇଥାଏ । ଏଗୁଡ଼ିକ ''ସୂଚନା ବା ଲୋକ-ସଂପର୍କ'' ବୃଦ୍ଧିର କେନ୍ଦ୍ର ନୁହେଁ । କିଂତୁ ଏହି କେନ୍ଦ୍ରର ''ପ୍ରଶିକ୍ଷଣ'' ବ୍ୟବସ୍ଥା ଓ ଆଦର୍ଶ ଏପରି ହେବା ଆବଶ୍ୟକ ଯାହା ଫଳରେ, ''କେନ୍ଦ୍ର''ର ''ଅଧ୍ୟାପନା କ୍ଷେତ୍ରରେ ବ୍ୟାପୃତ ଥିବା'' ବ୍ୟକ୍ତି, ଛାତ୍ର/ଛାତ୍ରୀଙ୍କ ମଧ୍ୟରେ ଏକ ''ରଚନାତ୍ମକ-କଳହ'' (Constructive quarrel) ସୃଷ୍ଟି କରିବାକୁ ଏହା ପରିବେଶ ଯୋଗାଇ ପାରିବ । ଅନ୍ୟ ଭାଷାରେ କହିଲେ, ଏହା ''ସାଂସ୍କୃତିକ-ରାଜନୀତି''ର କେନ୍ଦ୍ର ହେବ—''ରାଜନୀତିକ ସଂସ୍କୃତିର'', ଅନୁଶୀଳନର ସ୍ଥାନ ନୁହେଁ । ତେଣୁ ଏହି କେନ୍ଦ୍ରମାନେ ''ବିଶ୍ୱ ଓ ସ୍ଥାନୀୟ'' ତାତ୍ତ୍ୱିକତା ମଧ୍ୟରେ ସହାବସ୍ଥାନ ପାଇଁ ଏଭଳି ''ପ୍ରତ୍ୟୟ'' ସବୁ ବ୍ୟବହାର କରିବେ ଯାହା ''ଭାବ ଓ ଅର୍ଥ ଦ୍ୟୋତକ'' ହୋଇପାରିବ । ଏହି ପରିପ୍ରେକ୍ଷୀରେ ''ସମୀକ୍ଷା'' ପ୍ରତ୍ୟୟ ବ୍ୟବହାର କରାଯାଇପାରେ । ଏ ସଂପର୍କରେ ''ଓଡ଼ିଆ''ରେ କି କି ''ମାର୍ଗଦର୍ଶୀ ଗ୍ରନ୍ଥ'' ରଚନା କରାଯାଇଛି ଓ ସେହି ଗ୍ରନ୍ଥମାନଙ୍କର ''ଆଲୋଚନା'' କରିବା ପାଇଁ ''ସମୀକ୍ଷା'' ପ୍ରତ୍ୟୟ ବ୍ୟବହାର କରାଯାଇ ପାରିବ କି ? ପୁଣି ଏହି ''ସମୀକ୍ଷା'' ମଧ୍ୟ ନିର୍ଦ୍ଦିଷ୍ଟ ''ସମୟସୀମା'' ମଧ୍ୟରେ ବିଚାର କରାଯିବା ଉଚିତ ହେବ ।

ତେଣୁ "Critique" ର ପରିଭାଷା ଭାବରେ ଏଠାରେ ''ସମୀକ୍ଷା'' ପ୍ରତ୍ୟୟ ବ୍ୟବହାର କରାଯାଉଛି ।



# ସଶକ୍ତୀକରଣ (Empowerment)

ଓଡ଼ିଆ ଶବ୍ଦ ସଂପଦ ମଧ୍ୟରେ ଏହି ନୂତନ ଶବ୍ଦ ସୃଷ୍ଟି ଖୁବ୍ ବେଶୀ ଦିନର ନୁହେଁ । ମୋଟାମୋଟି ଦୁଇ ଦଶନ୍ଧି ମଧ୍ୟରେ ଏହି ପାରିଭାଷିକ ଶବ୍ଦର ବ୍ୟବହାର ବଢ଼ି ବଢ଼ି ଚାଲିଛି । ମୁଖ୍ୟତଃ ଏହା ନାରୀମାନଙ୍କର ବିକାଶ କ୍ଷେତ୍ରରେ ଇଂରାଜୀ ଶବ୍ଦ 'ଏମ୍‌ପାୱାରମେଣ୍ଟ'ର ପାରିଭାଷିକ ଶବ୍ଦ ଭାବରେ ଗୃହୀତ ହୋଇସାରିଛି । ଏହା କ୍ରମଶଃ ତାତ୍ତ୍ୱିକତା କ୍ଷେତ୍ରରେ ଏକ ପ୍ରତ୍ୟୟ ଭାବରେ ଗୃହୀତ ହୋଇସାରିଥିଲେ ମଧ୍ୟ ଏହାର ଅର୍ଥ ଏବେ ବି ଜନମାନସରେ ଏପରିକି ନାରୀମାନଙ୍କ କ୍ଷେତ୍ରରେ ମଧ୍ୟ ବିଚାର ବିମର୍ଶ ଭିତରକୁ ପ୍ରବେଶ କରିନାହିଁ । ମୁଖ୍ୟତଃ ଏହି ପ୍ରତ୍ୟୟ ରାଜନୈତିକ ଭାବନା ପ୍ରଣୋଦିତ ଓ ନାରୀମାନଙ୍କୁ ରାଜନୈତିକ ଓ ଆର୍ଥିକ ସୁଯୋଗ ଦେବା କ୍ଷେତ୍ରରେ ସୀମିତ ରହିଛି । କିନ୍ତୁ ଏହା ଓଡ଼ିଶାରେ ତାତ୍ତ୍ୱିକତା ସୃଷ୍ଟି କରିପାରିନାହିଁ । ତାର କାରଣ ମଧ୍ୟ ସ୍ପଷ୍ଟ । ବିଭିନ୍ନ ଅଞ୍ଚଳର ନାରୀମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହୋଇସାରିଛି । ତେଣୁ ସେମାନଙ୍କୁ ସଚେତନ କରିବା ପ୍ରକ୍ରିୟା ମଧ୍ୟ ସୀମିତ । ଏହି ପ୍ରତ୍ୟୟର ସୁଯୋଗ ନେଇଛନ୍ତି, କେବଳ ସହର ବା ନଗର କୈନ୍ଦ୍ରିକ ନାରୀ ସମାଜ ।

ସଶକ୍ତିକରଣର ଅର୍ଥଗୁଡ଼ିକ ହେଲା : କ୍ଷମତା ହସ୍ତାନ୍ତର, ମାନସିକ ଓ ଶାରୀରିକ କ୍ଷେତ୍ରରେ ସେମାନଙ୍କୁ ସାମର୍ଥ୍ୟ ଦେବା, କର୍ତ୍ତୃତ୍ୱ ଦେବା, ଆଇନଗତ ସୁବିଧା ଯୋଗାଇବା । କିନ୍ତୁ ଏଇ କ୍ଷମତାର ପରିଧି ମଧ୍ୟ ବ୍ୟାପକ । ନାରୀମାନଙ୍କର ଅକ୍ଷମତା ଦୂର କରି ସେମାନଙ୍କର ସାମର୍ଥ୍ୟ ଗଠନ କରିବା ଏହାର ପ୍ରଧାନ ଉଦ୍ଦେଶ୍ୟ ଥିଲେ ମଧ୍ୟ ଏଥିପାଇଁ ଆବଶ୍ୟକୀୟ ଶିକ୍ଷା ଓ ସ୍ୱାସ୍ଥ୍ୟ ଜନିତ ସମସ୍ୟା ଏବେ ବି ଜନସଂଖ୍ୟାର ପ୍ରାୟ ଅଧାଅଧି ନାରୀମାନଙ୍କ ନିକଟରେ ପହଞ୍ଚିବା ସମ୍ଭବପର ହୋଇନାହିଁ । ସାମାଜିକ ଓ କ୍ଷମତାର ସଂପର୍କ କ୍ଷେତ୍ରରେ ଏଥିପାଇଁ ହୋଇ ଆସିଥିବା ଯୋଜନା ଓ ପ୍ରଚେଷ୍ଟା ଏବେ ବି ସେମାନଙ୍କ ନିକଟରେ ପହଞ୍ଚିପାରି ନାହିଁ । ତେଣୁ ସଶକ୍ତିକରଣ ଏବେ ବି ଅଞ୍ଚଳ ଭିତ୍ତିକ (ସାମାଜିକ ପରିବେଶ) ମୂଲ୍ୟାୟନର ଊର୍ଦ୍ଧ୍ୱକୁ ଉଠିପାରି ନାହିଁ । ଶିକ୍ଷା ବ୍ୟବସ୍ଥାରେ (ବିଶେଷତଃ ନାରୀ ଅଧ୍ୟୟନ କେନ୍ଦ୍ରମାନଙ୍କରେ) ଭାରତୀୟ ସମାଜ ଓ ଏହି ସମାଜର ବିଭିନ୍ନ ସ୍ତରରେ ଥିବା ନାରୀମାନଙ୍କ ପାଇଁ କିଭଳି ପାଠ୍ୟ ପ୍ରସ୍ତୁତ କରି ସେମାନଙ୍କ ମାନସିକ ଓ ଶାରୀରିକ ଅସୁବିଧାକୁ ମୁକାବିଲା କରାଯାଇ ପାରିବ, ତାହାର କଳନା ଓ ନିରାକରଣ ବ୍ୟବସ୍ଥା ଆଶାନୁରୂପ ନୁହେଁ । ଦର୍ଶନ ଶାସ୍ତ୍ରର ବା ଆଧିଦୈବିକ ପରମ୍ପରାରେ ଥିବା 'ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା' କାନକୁ ଭଲ ଶୁଭିପାରେ ଓ ଏଥିନେଇ ତର୍କ ବିତର୍କ କରାଯାଇପାରେ, କିନ୍ତୁ ସଂସ୍କୃତିର ପରିବର୍ତ୍ତନ ଦେଇ ସଶକ୍ତିକରଣର ଅର୍ଥକୁ କିପରି ଅଧିକ ପ୍ରସାର କରାଯାଇ ପାରିବ, ତାହା ବିଚାରକୁ ନେବା ଆବଶ୍ୟକ । ଜୀବନର ଗୁଣାତ୍ମକ ବିକାଶ ପାଇଁ ସଶକ୍ତିକରଣକୁ ଆହୁରି ସର୍ବଜନମୁଖୀ କରିବାର ଆବଶ୍ୟକତା ଦେଖାଦେଇଛି । ଏ ଦିଗରେ ଉଭୟ ଭାଷା କେନ୍ଦ୍ର ଓ ସାହିତ୍ୟ ଅନୁଷ୍ଠାନ ମଧ୍ୟ ଅଧିକ ଧ୍ୟାନ ଦେବା ଆବଶ୍ୟକ । ନଚେତ୍ ଏହା କେବଳ ସ୍ଲୋଗାନ ହୋଇଯିବାର ଆଶଙ୍କା ରହିଛି ।



# ସାହିତ୍ୟ ଓ କଳାତ୍ମକ ଅଭିବ୍ୟକ୍ତିର ପ୍ରସାର

ଏହି ଶୀର୍ଷକରେ ରାଜାରାମମୋହନ ରାୟ ପୁସ୍ତକାଳୟ ପ୍ରତିଷ୍ଠାନ ତରଫରୁ ଗତ ନଭେମ୍ବର ମାସରେ ଏକ ଆଲୋଚନା ଚକ୍ରରେ ଅଂଶ ଗ୍ରହଣ କରିବାକୁ ନିମନ୍ତ୍ରିତ ହୋଇଥିଲି । ଆଲୋଚନା ଚକ୍ରରେ ଯେଉଁ ଚର୍ଚ୍ଚା ହେଲା ସେ ସଂପର୍କରେ କିଛି ଲେଖିବା ଏ ଲେଖାର ଉଦ୍ଦେଶ୍ୟ ନୁହେଁ ।

ରାଜନୈତିକ ପରିବର୍ତ୍ତନ ଫଳରେ ୧ ୯ ୯ ୧ ରୁ ଭାରତବର୍ଷରେ ଓ ଓଡ଼ିଶାରେ ଯେଉଁ ନୂତନ 'ପ୍ରତ୍ୟୟ' ଭାବରେ 'ଜଗତୀକରଣ' କାୟା ବିସ୍ତାର କରି ସାରିଛି, ସେହି ପରିପ୍ରେକ୍ଷୀରେ ଉପରୋକ୍ତ ଶୀର୍ଷକର 'ଅର୍ଥ' ସଂପର୍କରେ କେତେକ ପ୍ରଶ୍ନ ମନରେ ଆସୁଛି । ସେ ସଂପର୍କରେ ଆଲୋଚନା ଅବ୍ୟାହତ ରଖିବା ଆବଶ୍ୟକ ବୋଲି ମନେ ହେଉଛି ।

''ଲେଖା'' ଓ ''ପଢ଼ିବା'' ବା ଲେଖକ ଓ ପାଠକ ମଧ୍ୟରେ ଯେଉଁ ସଂପର୍କ ଆଶା କରାଯାଏ, ସେଥିପାଇଁ ଉପାୟ ଖୋଜିବା ଆବଶ୍ୟକ ନୁହେଁ କି ? ଏ ''ଉପାୟ'' କଥା ଚିନ୍ତା କଲାବେଳେ ସ୍ୱାଭାବିକ ଭାବରେ ପ୍ରଶ୍ନ ଉଠୁଛି ଯେ ''ଲେଖାଗୁଡ଼ିକ'' ପୁସ୍ତକ ଆକାରରେ ସଂକଳିତ ଓ ପ୍ରକାଶିତ ହେବା ପରେ ଏହା କେଉଁ ନିର୍ଦ୍ଦିଷ୍ଟ ଶ୍ରେଣୀର ପାଠକଙ୍କ ନିକଟରେ କିପରି ପହଞ୍ଚିପାରିବ ଓ ତାହା ପାଠକରି ପାଠକ କିପରି ତାହାର ପ୍ରତିକ୍ରିୟା ପ୍ରକାଶ କରିବେ ଏହା ଏକ ଜଟିଳ ସମସ୍ୟା । ''ପାଠକ ସାଧାରଣ'' କହିଲେ ବେଶୀ ପଢ଼ୁଆ, ମଧ୍ୟମ ସ୍ତରର ପଢ଼ୁଆ ଓ ଅକ୍ଷର ଚିହ୍ନି ଶିଖିବା ପାଠକମାନଙ୍କ ଭିତରେ ଅନେକ ଶ୍ରେଣୀ ରହିଛି । ଭାରତରେ ବା ଓଡ଼ିଶାରେ କେତେ ବହି ପ୍ରକାଶ ପାଉଛି, ତା'ର କୌଣସି ସଠିକ୍ ପରିସଂଖ୍ୟାନ ଏବେ ବି ହୋଇପାରିଛି କି ନାହିଁ ସନ୍ଦେହ । ଏବେ ପ୍ରଶାସନ ଓ ଘରୋଇ ଉଦ୍ୟମ ମଧ୍ୟରେ ସହଭାଗିତା ପ୍ରଦର୍ଶନ କରିବା ବା ସେ ଦିଗରେ ରାଜା ରାମମୋହନ ରାୟ (ରା.ରା.ରା.ପ୍ର) ପ୍ରତିଷ୍ଠାନ କି କି ନୀତିଗତ ବ୍ୟବସ୍ଥା ଗ୍ରହଣ କରିଛନ୍ତି, ତାହାର ସୂଚନା ପ୍ରକାଶ ପାଇନାହିଁ । ଯଦିବା ପ୍ରକାଶ ପାଇଥାଏ, ତାହା ବହୁଳ ଭାବରେ ପ୍ରସାର କରାଯାଇଛି କି ?

ଉପରୋକ୍ତ ଆଲୋଚନା ଚକ୍ରଟି ଯେହେତୁ ଇଂରାଜୀରେ ହେଉଥିଲା - ସେଠାରେ ଯେଉଁ କେତକ ''ପ୍ରତ୍ୟୟ''ର ବ୍ୟବହାର ଶୁଣିବାକୁ ମିଳିଲା - ସେ ମଧ୍ୟରେ Indigenous Modernity, Reading Public, Post-Colonial Reader, Post-Modern Culture, Women's Reading, Media ଆଦିର ବ୍ୟବହାର ଶୁଣିବାକୁ ମିଳିଲା । ଏଥିରୁ ମନେହେଲା ''ବହି ଓ ପାଠକ'' ବା ''ଲେଖକୀୟ ଓ ପାଠକୀୟ'' ସଂପର୍କକୁ ସଂପ୍ରସାରଣ କରିବା ପାଇଁ ଉପରୋକ୍ତ ''ପ୍ରତ୍ୟୟ'' ଗୁଡ଼ିକ ବ୍ୟବହାର କରାଯାଇଛି । ଏହି ''ପ୍ରତ୍ୟୟ ଗୁଡ଼ିକ'' ସଂପର୍କରେ ଅଧିକ ଆଲୋଚନା ଆବଶ୍ୟକ । କାରଣ ଲେଖକୀୟ/ପାଠକୀୟ ସମ୍ପର୍କକୁ ଦୃଢ଼ କରିବା ପାଇଁ ଏହି 'ପ୍ରତ୍ୟୟ ଗୁଡ଼ିକର ଅର୍ଥ, ଅର୍ଥାନ୍ତର, ଅର୍ଥ ବ୍ୟାପ୍ତି, ପାଠକ ଗ୍ରହଣ କରିବା ମଧ୍ୟ ଆବଶ୍ୟକ । ଏ ଦିଗରେ ''ବଣିକ୍ ଅର୍ଥନୀତି'' କିପରି ଉତ୍ସାହନ ଦେଇପାରିବ ବା କି ପ୍ରତିବନ୍ଧକ ସୃଷ୍ଟି ହେବାର ସମ୍ଭାବନା ରହିଛି, ସେ ଦିଗରେ ମଧ୍ୟ ଆଲୋଚନା ଜରୁରୀ । ଏହା ନିଶ୍ଚିତ ଯେ ଏହି ''ପ୍ରତ୍ୟୟଗତ'' ଜଟିଳତାକୁ କିଛି ପରିମାଣରେ ସରଳ, ବୋଧଗମ୍ୟ କରି ନ ପାରିଲେ ଲେଖକୀୟ/ ପାଠକୀୟ ସଂପର୍କ ଦୃଢ଼ ହୋଇ ପାରିବ ନାହିଁ । ତେଣୁ ମନେହୁଏ indigenous modernityର ସଂପର୍କ ଦୃଷ୍ଟିରୁ ଏହି ଅର୍ଥ ହେବ ଯେ ''ଅଞ୍ଚଳ ଭିତ୍ତିକ ଆଧୁନିକତା''—ଯେପରି ସାନ୍ତାଳୀ, କୋଶଳୀ, ସମ୍ବଲପୁରୀ, ବା ଓଡ଼ିଆ ଆଦି । ଅନ୍ୟ ଭାଷାରେ କହିଲେ ଏହା ନିର୍ଦ୍ଦିଷ୍ଟ 'ଗୋଷ୍ଠୀ ଭିତ୍ତିକ' ଆଧୁନିକତା ମଧ୍ୟ ହୋଇପାରେ । ସେ ଦୃଷ୍ଟିରୁ ''ପୁସ୍ତକ'' ନିର୍ବାଚନ ଓ ଅନୁରୂପ ପାଠାଗାରର ସମୃଦ୍ଧି ମଧ୍ୟ ରାରାରପ୍ରର ଆଭିମୁଖ୍ୟ ହେବା ଆବଶ୍ୟକ ।

ଦ୍ୱିତୀୟ 'ପ୍ରତ୍ୟୟଟି' Reading Public । ଏହାର ଅର୍ଥ ''ପଢ଼ିପାରୁଥିବା ଜନସାଧାରଣ'' । ଏ ଭିତରେ ଆସିବେ ଶିକ୍ଷା କ୍ଷେତ୍ରରେ ବିଭିନ୍ନ ସ୍ତରରେ ଥିବା ଜନ ସାଧାରଣ ଓ ସେମାନଙ୍କର ଆବଶ୍ୟକତାକୁ ପୂରଣ କରିବା ଦିଗରେ ପ୍ରତିଷ୍ଠାନର ସଂପ୍ରସାରିତ ବା ପରିବର୍ତ୍ତିତ ଉଦ୍ୟମ ସଂପର୍କରେ ବ୍ୟବସ୍ଥା ଗ୍ରହଣ କିଂବା ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପାଠକଙ୍କ ନିକଟରେ ନିର୍ଦ୍ଦିଷ୍ଟ ପୁସ୍ତକ ପହଞ୍ଚାଇବାର ଅଭିନବ ଉଦ୍ୟମ ସୃଷ୍ଟିର ଆବଶ୍ୟକତା ରହିଛି । ଏ ଦିଗରେ ''ଘରୋଇ ଉଦ୍ୟମ'' ସହ ଆନ୍ତରିକ ସହଯୋଗ ସ୍ଥାପନ କରିବା ମଧ୍ୟ ବିଚାରକୁ ନିଆଯାଇପାରେ ।

''ସାହିତ୍ୟ ଓ କଳାତ୍ମକ ଅଭିବ୍ୟକ୍ତି'' ଅତ୍ୟନ୍ତ ବ୍ୟାପକ ବିଷୟ । ତେଣୁ ଏ କ୍ଷେତ୍ରରେ ପ୍ରତିଷ୍ଠାନ ଅନ୍ୟାନ୍ୟ ସହଯୋଗୀ ପ୍ରଶାସନିକ ବ୍ୟବସ୍ଥା ସହିତ ଗଭୀର ଆଲୋଚନା କରି ନିଜର ସୀମା ନିର୍ଦ୍ଧାରଣ କରିବା ଆବଶ୍ୟକ । ସ୍ମରଣ ରଖିବାକୁ ହେବ ଯେ ''ପାଠକ'' ମାନେ ବିଭିନ୍ନ ସାଂସ୍କୃତିକ ''ପରିବେଶ'' ମଧ୍ୟରେ ରହନ୍ତି ଓ ସେମାନଙ୍କର ଆବଶ୍ୟକତା ମଧ୍ୟ ଭିନ୍ନ । ଅନୁଭୂତିରୁ ଜଣାଯାଇଛି, ଯେ ଓଡ଼ିଶାର କେତେକ ''ସେବାଶ୍ରମ''ରେ ଯଦି ଆଧୁନିକ କବିମାନଙ୍କର ଇଂରାଜୀ କବିତା ବହି ରଖାଯାଏ, ତେବେ ତା'ର ପାଠକ ସୃଷ୍ଟି ହୋଇ ପାରିବେ କି ? ଏହା ''କାଲ ଆଗରେ ମୂଳା ଚୋବାଇଲା'' ଭଳି ହେବ । ସେହିପରି Post Coeonial Reader - ଓଡ଼ିଆରେ କହିଲେ ''ଔପନିବେଶିକତା'' ପରବର୍ତ୍ତୀ ଯେଉଁ ପାଠକ ଶ୍ରେଣୀ ସୃଷ୍ଟି ହୋଇଛନ୍ତି (ଭାରତରେ ବା ଓଡ଼ିଶାରେ ସେହି ଉପନିବେଶବାଦ ସୃଷ୍ଟି ଫଳରେ ହିଁ ପାଠକ ସୃଷ୍ଟି ହୋଇଛନ୍ତି ବୋଲି ଉପଲବ୍ଧ ହେଉଛି) । ମୋର ମନେହୁଏ ସେ ଦିଗରେ ମଧ୍ୟ ବହୁ ଲେଖକଙ୍କର ବହୁ ପୁସ୍ତକ ରଚିତ ଓ ପ୍ରକାଶିତ ହୋଇଛି । ସେ ସବୁ ''ପୁସ୍ତକ-ନିର୍ବାଚନ'' ଓ ସେ ''ଶ୍ରେଣୀ''ର ପାଠକଙ୍କୁ ଚିହ୍ନଟ କରି ତଦନୁରୂପ ପୁସ୍ତକ ନିର୍ବାଚନ ଓ ସେଥିପାଇଁ ମଧ୍ୟ ପୁସ୍ତକାଳୟରେ ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ । ଉଦାହରଣ ସ୍ୱରୂପ ଧରନ୍ତୁ ''ଗାନ୍ଧିଜୀଙ୍କର ରଚନାବଳୀ'' । ସେ ସଂପର୍କରେ ବିଭିନ୍ନ ଦୃଷ୍ଟିକୋଣରୁ, ଏପରିକି ''ଜଗତୀକରଣ'' ପରେ ମଧ୍ୟ ରଚିତ ପୁସ୍ତକ ସବୁ ନିର୍ବାଚନ କରି ପ୍ରତ୍ୟେକ ରାଜ୍ୟରେ କେତେକ 'ସ୍ୱତନ୍ତ୍ର ପୁସ୍ତକାଳୟ'ର ଆବଶ୍ୟକତା ରହିଛି । ଏହାଛଡ଼ା ସେ ପୁସ୍ତକ ସବୁ ମଧ୍ୟ 'ବିଭିନ୍ନ ଶ୍ରେଣୀର ପାଠକଙ୍କ' ପାଇଁ 'ପୁସ୍ତକାଳୟ'ରେ ବର୍ଗୀକରଣ କରି ରଖିବା ଆବଶ୍ୟକ ।

ଅନ୍ୟ ''ପ୍ରତ୍ୟୟଟି'' ହେଲା Post Modern Culture ଏହାର ଓଡ଼ିଆ ଭାଷାନ୍ତର ହେବ ପରାଧୁନିକ ସଂସ୍କୃତି (ଉପସର୍ଗ 'ପରା'+ଆଧୁନିକ) । ଏ ଶ୍ରେଣୀର ପାଠକ ଓ ପୁସ୍ତକର ସଂଖ୍ୟା ମଧ୍ୟ ସୀମିତ । ଜଗତୀକରଣ ପ୍ରକ୍ରିୟା ମଧ୍ୟରେ ପ୍ରାୟ ''ପନ୍ଦର ବର୍ଷ'' ହେଲାଣି । ଅନୁରୂପ ପୁସ୍ତକ ମଧ୍ୟ ରଚିତ ହେଉଛି - ତେଣୁ ସେ ପ୍ରକାର ''ପୁସ୍ତକ ନିର୍ବାଚନ'' ଓ 'ସୀମିତ ପାଠକ' ଦୃଷ୍ଟିରୁ, ତାହାର 'ପ୍ରସାର' ସଂପର୍କରେ ସବିଶେଷ ଆଲୋଚନା କରିବାକୁ ପ୍ରତିଷ୍ଠାନ ଅଗ୍ରାଧିକାର ଦେବା ଜରୁରୀ ।

ଅନ୍ୟ 'ପ୍ରତ୍ୟୟଟି' ହେଲା 'Women's Reading' ଯାହାର ଓଡ଼ିଆ ଅର୍ଥ ହେବ ''ନାରୀମାନଙ୍କର ପଠନ'' । ଠିକ୍ ଅନୁରୂପ ଭାବରେ ଏଠାରେ ବିଭିନ୍ନ ଶ୍ରେଣୀର ନାରୀ, ସେମାନଙ୍କର ଶିକ୍ଷାଗତ ପାର୍ଥକ୍ୟ ଓ ଅନୁରୂପ 'ପୁସ୍ତକ' ପ୍ରକାଶନ କଥା ରହିଛି । ପୁଣି ରାଜନୈତିକ ଚିନ୍ତନରେ ମଧ୍ୟ ''ନାରୀବାଦ'' ଭିତରେ ''କୋହଳ'' (ବା 'ନରମ' ନାରୀବାଦ) ବା ବୈପ୍ଳବିକ (Radical Feminism) ଦୁଇଶ୍ରେଣୀର ପାଠକ ଓ ଅନୁରୂପ ଗ୍ରନ୍ଥର ସମୀକ୍ଷା, ନିର୍ବାଚନ ଓ ପାଠାଗାରକୁ ତଦନୁରୂପ ବ୍ୟବସ୍ଥିତ କରିବା - (ନାରୀବାଦର 'ପ୍ରତ୍ୟୟଗତ' ପାର୍ଥକ୍ୟ ସଂପର୍କରେ ଏହି ପୁସ୍ତକର ଅନ୍ୟତ୍ର ଆଲୋଚନା ରହିଛି) ।

'ଆଲୋଚନା ଚକ୍ର'ରେ ବ୍ୟବହୃତ ଅନ୍ୟ ପ୍ରତ୍ୟୟଟି ହେଉଛି "Media" - ଏହା ମୁଦ୍ରିତ, ଇଲେକ୍ଟ୍ରୋନିକ୍ ଭେଦରେ ଦୁଇପ୍ରକାର । ମନେ ହେଉଛି ''ଜଗତୀକରଣ'' ପ୍ରକ୍ରିୟାରେ ଏହି ''ଗଣମାଧ୍ୟମ'' ''ଆଶାତୀତ'' ଭାବରେ ଅଭିବୃଦ୍ଧି ଲାଭ କରିଛି । ତେଣୁ 'ସାହିତ୍ୟ'/ପୁସ୍ତକ ଲୋକଙ୍କ ପାଖରେ ପହଞ୍ଚିବା ପୂର୍ବରୁ ''ସାହିତ୍ୟିକ ଚିନ୍ତନ'' ଲୋକଙ୍କ ନିକଟରେ ପହଞ୍ଚିଯାଉଛି । ''ଗଣମାଧ୍ୟମ'' ମଧ୍ୟ ଲେଖକୀୟ/ପାଠକୀୟ ବଦଳରେ, ଶ୍ରୁତି ନିର୍ଭର ଜ୍ଞାନ ଗ୍ରହିତାଙ୍କ ସହିତ ସଂପର୍କ ଦୃଢ଼ତର କରିବା ଆରମ୍ଭ କରିଛି । ଏ ସବୁ ବିଷୟରେ ନୀତିନିୟମ ପ୍ରଣୟନ କରିବା ଓ ତାହା କାର୍ଯ୍ୟକାରୀ କରିବା ମଧ୍ୟ ପ୍ରତିଷ୍ଠାନର କାର୍ଯ୍ୟକ୍ରମ ମଧ୍ୟରେ ଆସିବ ବୋଲି ଆଶା କରିବା ସ୍ୱାଭାବିକ ।

ତେଣୁ ଯେଉଁ ବନ୍ଧୁମାନେ, କର୍ମକର୍ତ୍ତାମାନେ ମତେ ଏହି ଲେଖା ପାଇଁ ପ୍ରୋତ୍ସାହିତ କରିଛନ୍ତି, ସେମାନଙ୍କୁ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ, ଏ ଦିଗରେ ଆଲୋଚନା ଅବ୍ୟାହତ ରଖିବେ ବୋଲି ଆଶା କରୁଛି ।



# ଶବ୍ଦଶକ୍ତି (Word Power)

ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଉଭୟ ୟୁରୋପୀୟ ଓ ଆମେରିକୀୟ ''ଅଭିଚର୍ଚ୍ଚା''ରେ (Discourse) ନୂତନ 'ପରିଭାଷା' ଭାବରେ "Power" ପ୍ରତ୍ୟୟ ବ୍ୟବହୃତ ହେଉଛି । ଏହାର ଅର୍ଥ ଗୁଡ଼ିକୁ କ'ଣ ପ୍ରଥମେ ବିଚାରକୁ ନିଆଯାଉ । ସେହି ଅର୍ଥଗୁଡ଼ିକ ମଧ୍ୟରୁ ''ସଂସ୍କୃତି/ସାହିତ୍ୟ''ର ''ଚର୍ଚ୍ଚା କ୍ଷେତ୍ରରେ'' କେଉଁ ପାରିଭାଷିକ ପ୍ରତ୍ୟୟ ବ୍ୟବହାର କରାଯାଇପାରିବ, ତାହା ଆଲୋଚନା ସାପେକ୍ଷ । ତେଣୁ ଓଡ଼ିଆରେ 'ଶବ୍ଦ-ଶକ୍ତି'ପ୍ରତ୍ୟୟ "Power" ର ପରିଭାଷା ଭାବରେ ବ୍ୟବହାର କରାଯାଉଛି ।

ଅଭିଧାନ ଅନୁଯାୟୀ "Power" ଶବ୍ଦର ଅର୍ଥଗୁଡ଼ିକ ହେଲା : ଯେ କୌଣସି କାର୍ଯ୍ୟ ସଂସାଧନ କରିବାର ଦକ୍ଷତା, ଶରୀର ଓ ମନର ଦୃଢ଼ତା, ରାଜନୈତିକ ବା ସାଂସ୍କୃତିକ ସବଳତା, ରାଜନୈତିକ ଓ ରାଷ୍ଟ୍ରୀୟ ସାମର୍ଥ୍ୟ ପ୍ରଦର୍ଶନରେ ସନ୍ତୁଳନ, ପ୍ରଭାବ ବିସ୍ତାର, ପ୍ରାଧାନ୍ୟ, ବିଧି ସମ୍ମତ (ଆଇନ ଅର୍ଥରେ) କର୍ତ୍ତୃତ୍ୱ ଆଦି ।

''ଓଡ଼ିଆ''ରେ ଏହା ସାଧାରଣ ଅର୍ଥରେ ''କ୍ଷମତା'' ସୂଚାଉଥିଲେ ବି ''କ୍ଷମତା'' ଠିକ୍ ଇଂରେଜୀର "Power" ପାରିଭାଷିକତାର ନିକଟବର୍ତ୍ତୀ ବୋଲି ମୋର ମନେ ହେଉନାହିଁ । ବିଶେଷ କରି ସାହିତ୍ୟ, ସଂସ୍କୃତି ବା କଳାତ୍ମକ ଅଭିବ୍ୟକ୍ତି କ୍ଷେତ୍ରରେ ଏହା ଏକ ''ଅନ୍ତର୍ନିହିତ ଶକ୍ତି''ର ସୂଚନା ଦେଉଛି ଓ ଏହା ଶକ୍ତିର ବିସ୍ତାର ଘଟାଏ । ତେଣୁ ଏଠାରେ ସାଂସ୍କୃତିକ ଆଲୋଚନା କ୍ଷେତ୍ରରେ "Power" ପ୍ରତ୍ୟୟର ପରିଭାଷା ଭାବରେ ''ଶବ୍ଦଶକ୍ତି''ର ବ୍ୟବହାର ଯୁକ୍ତିଯୁକ୍ତ ।

ତେଣୁ ''ଓଡ଼ିଆ'' ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ—ତାହା ଯେକୌଣସି ପ୍ରକାର ଅଭିବ୍ୟକ୍ତି ହେଉ ନା କାହିଁକି—କେଉଁ କୃତିରେ ଶବ୍ଦଶକ୍ତି ''ମାର୍ଗ ଦର୍ଶକ'' ହୋଇ ପାରିଛି, ତାହା ଅନୁସନ୍ଧାନ କରି ''ଯୁକ୍ତି ଓ ପ୍ରମାଣ'' ବଳରେ ତାହା ପ୍ରତିପାଦନ କରିବା ''ଅଭିଚର୍ଚ୍ଚା ଜନିତ ବିଶ୍ଳେଷଣ'' ("Discursive Analysis) ପାଇଁ

ଆବଶ୍ୟକ ହୋଇପଡ଼ିଛି । ଅନ୍ୟ ଭାଷାରେ କହିଲେ, ଶବ୍ଦଶକ୍ତି 'ସଂସ୍କୃତି ଓ ସାହିତ୍ୟ ଚର୍ଚ୍ଚା' କ୍ଷେତ୍ରରେ କିଭଳି ''ପ୍ରଭାବ'' ବିସ୍ତାର କରିଛି, ତା'ର ପରିସଂଖ୍ୟାନ ଓ ଦାର୍ଶନିକ ଭିତ୍ତିଭୂମିକୁ ଆବିଷ୍କାର କରିବାକୁ ହେବ ।

ଏ ଦିଗରେ ''ପାଶ୍ଚାତ୍ୟ'' ସଂସ୍କୃତିର ''ଚର୍ଚ୍ଚା-ବିଶାରଦ''ମାନେ ମାଇକେଲ୍ ଫୁକୋଙ୍କର ''ଚର୍ଚ୍ଚା''କୁ ଅଗ୍ରାଧିକାର ଦେଇଛନ୍ତି । ଫୁକୋ ଏହି ''ଶବ୍ଦଶକ୍ତି'' ପ୍ରକ୍ରିୟାକୁ ''ଦମନ'', ନିର୍ଯ୍ୟାତନା ବା ବାଧକତା (Inhibition) ଭାବରେ ଗ୍ରହଣ କରି ନାହାନ୍ତି, ବରଂ ଏହାକୁ ଲେଖକୀୟ ବା କଳାତ୍ମକ ଅଭିବ୍ୟକ୍ତିର ସୃଷ୍ଟି ଭାବରେ ବିଚାର କରିଛନ୍ତି । ସ୍ରଷ୍ଟା ତା'ର ଜ୍ଞାନର ଉତ୍ତରଣରେ ଓ ନିଜର ଅସ୍ତିତ୍ୱ ପ୍ରତିପାଦନ ପାଇଁ କୌଣସି ''ସୀମାରେଖା'' ବା ''ବାଧକତା''କୁ ସ୍ଥାନ ଦିଏନାହିଁ । ସ୍ରଷ୍ଟା ଏପରି ''ବିଷୟବସ୍ତୁ''କୁ ଉପଜୀବ୍ୟ ଭାବରେ ଗ୍ରହଣ କରିଥାଏ, ଯାହା ଉପରେ ସ୍ରଷ୍ଟାର ''ନିୟନ୍ତ୍ରଣ'' ରହିଥାଏ ଅର୍ଥାତ୍ ସେ ନିଜର ''ଭାବନା''ର ଅଭିବ୍ୟକ୍ତି ପାଇଁ ଶବ୍ଦ ଶକ୍ତିକୁ ବ୍ୟବହାର କରୁଥିଲେ ମଧ୍ୟ ତାହା ''ଶବ୍ଦବ୍ୟଞ୍ଜନା'' ଦ୍ୱାରା ସ୍ରଷ୍ଟାର ନିୟନ୍ତ୍ରଣାଧୀନ ଥାଏ । ତେଣୁ ''ଆନୁଷ୍ଠାନିକତା'' କ୍ଷେତ୍ରରେ ଆପଣା ଛାଏଁ ଏହା କାର୍ଯ୍ୟକରେ । ଅର୍ଥାତ୍ ''ସ୍ରଷ୍ଟା''ର ଅଭିବ୍ୟକ୍ତି ''ବ୍ୟକ୍ତି ସ୍ୱାତନ୍ତ୍ର୍ୟ''କୁ ସ୍ୱୀକାର କରୁଥିଲେ ମଧ୍ୟ ''ଶବ୍ଦଶକ୍ତି''କୁ ଏକ ସାମୂହିକ ରୂପ ଦେବାକୁ ଏକ ''ଆନୁଷ୍ଠାନିକତା'' ସୃଷ୍ଟି କରିଥାଏ । ଏହାକୁ ଇଂରେଜୀରେ କୁହାଯାଏ School of Thought (ବା ଚିନ୍ତକଗୋଷ୍ଠୀ) । ଏହି ଚିନ୍ତକଗୋଷ୍ଠୀ ମଧ୍ୟ ବାସ୍ତବ ନହୋଇ ''ପରିକଳ୍ପିତ ଗୋଷ୍ଠୀ'' ହୋଇପାରେ । ତେଣୁ ଆନୁଷ୍ଠାନିକ ଚର୍ଚ୍ଚା ବିଶାରଦମାନଙ୍କର ଗୋଷ୍ଠୀ ଚେତନା ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଏପରି 'ଭାବନା' ସୃଷ୍ଟିକରେ, ଯାହା ସାହିତ୍ୟ ଓ ସଂସ୍କୃତିର ମନ୍ମୟ ଜଗତକୁ ନିଜର କର୍ତ୍ତୃତାଧୀନ କରିଥାଏ । ଏହା ମଧ୍ୟ ସ୍ରଷ୍ଟାର ମନ୍ମୟ ଓ ସାମାଜିକ ପରିଚିତିକୁ ଦୃଢ଼ତର କରିପାରେ ।

ଫଳରେ ଯେ କୌଣସି ବିଷୟବସ୍ତୁକୁ 'ଅଭିଚର୍ଚ୍ଚା ବିଶାରଦ'ମାନେ ଏପରି ଶବ୍ଦଶକ୍ତି ଦ୍ୱାରା ପ୍ରକାଶ କରିଥାନ୍ତି ଯାହା ସାଂସ୍କୃତିକ ପରିବର୍ତ୍ତନ କ୍ଷେତ୍ରରେ ପ୍ରଭାବ ବିସ୍ତାର କରିଥାଏ । ଉଦାହରଣ ସ୍ୱରୂପ ''ଦାନ''ଶବ୍ଦକୁ ଦେଖିବା - ଏହାର ପ୍ରାଚୀନ

ବ୍ୟବହାର ଏବର ବ୍ୟବହାରଠାରୁ ପୃଥକ୍ । ଏହାକୁ ନୂତନ ଶବ୍ଦରାଜି ମଧ୍ୟରେ ନୂତନ ଅର୍ଥବ୍ୟାପ୍ତି ମଧ୍ୟରେ ଦେଖିବାକୁ ମିଳିଥାଏ - ଯେପରି ହିତାଧିକାରୀ (Beneficiary), ନିଯୁକ୍ତି ଖୋଜୁଥିବା ବ୍ୟକ୍ତି ମାନଙ୍କର ଭତ୍ତା, କିମ୍ବା କର୍ମାନୁଭୂତି (Work experience) ର ପ୍ରାପ୍ୟ, ଆଦି ଭାଷା ସମ୍ପଦ ମଧ୍ୟରେ ଆବିଷ୍କାର କରିହୁଏ । ଏହି ଭାଷା-ସମ୍ପଦର, ଅର୍ଥବ୍ୟାପ୍ତି ପାଇଁ "ଅଭିଚର୍ଚ୍ଚା ବିଶାରଦ"ମାନେ ନୂତନ ଶବ୍ଦଶକ୍ତି ("Power")ର ଉଦ୍‌ଭାବନ କରିଥାନ୍ତି । ଏପରିକି ପ୍ରଶାସନ କ୍ଷେତ୍ରରେ ମଧ୍ୟ ଏହି "ଚର୍ଚ୍ଚା ବିଶାରଦ"ମାନଙ୍କର "ଶବ୍ଦଶକ୍ତି"ର ବ୍ୟବହାର ଉପଲବ୍ଧ ହୋଇଥାଏ । ତେଣୁ ଏହାକୁ ପ୍ରଶିକ୍ଷଣ (Training), ପୁନଃ-ପ୍ରଶିକ୍ଷଣ (Retraining), ପୁନରଲୋଚନା (Refresher), ନୂତନ ଶିକ୍ଷା (Orientation) ଆଦି ବ୍ୟବସ୍ଥା ଜରିଆରେ ପ୍ରୟୋଗ କରିଥାନ୍ତି । ତେଣୁ 'ଉଚ୍ଚତର ଶିକ୍ଷା' କ୍ଷେତ୍ରରେ, ବିଷୟବସ୍ତୁ ଉପସ୍ଥାପନ, ଶ୍ରେଣୀଗୃହର ଆଲୋଚନା ବା ସଂଳାପ, ଅଧ୍ୟାପକମାନଙ୍କର କର୍ତ୍ତୃତ୍ୱ ଓ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଶିକ୍ଷକମାନଙ୍କର ମୂଲ୍ୟାୟନ ଆଦି ଆବଶ୍ୟକ ହୋଇପଡ଼େ । ଏଠାରେ ଗୁରୁ ଓ ଶିଷ୍ୟ ମଧ୍ୟରେ ଥିବା "ପରିପ୍ରଶ୍ନେନ ସେବୟା"ର ଆଧୁନିକ ରୂପ ଦେଖିବାକୁ ମିଳେ । ଛାତ୍ରାଛାତ୍ରୀମାନେ "ଦାସ" ନୁହନ୍ତି କିଂବା ଶିକ୍ଷକ ଅର୍ଥରେ "ଗୁରୁମାନେ" ପ୍ରଭୁ ନୁହନ୍ତି । ପ୍ରାଚୀନ ଭାରତୀୟ ପରଂପରାରେ "ଛାତ୍ର" (ଶିଷ୍ୟମାନେ) ମଧ୍ୟ "ମିତ୍ର" । ତେଣୁ ଆଧୁନିକ କାଳର ଶିକ୍ଷା ବ୍ୟବସ୍ଥାରେ 'ଅଭିଚର୍ଚ୍ଚା ବିଶାରଦ'ମାନେ "ଶବ୍ଦଶକ୍ତି"ର ବ୍ୟବହାର ଜରିଆରେ ଏହି "ମିତ୍ରଭାବ" ସୃଷ୍ଟି କରନ୍ତି । ଏଇଭଳି ସାଂସ୍କୃତିକ ପରିବର୍ତ୍ତନ କେବଳ ଅନୁରୂପ ଆନୁଷ୍ଠାନିକ ପରିବର୍ତ୍ତନ ଜରିଆରେ ହିଁ ସମ୍ଭବ । ଏଠାରେ ଶିକ୍ଷକ ଛାତ୍ର ଓ ଛାତ୍ର ମଧ୍ୟ ଶିକ୍ଷକ । ତେଣୁ ଏ ପରିବର୍ତ୍ତିତ ଭୂମିକାରେ ପାରିଭାଷିକ ପ୍ରତ୍ୟୟଗତ ତାତ୍ପର୍ଯ୍ୟ ପାଇଁ, "ଶବ୍ଦଶକ୍ତି" ("Power")ର ବ୍ୟବହାରକୁ ଅନୁମୋଦନ କରା ଯାଇଥାଏ ।

ଫୁକୋଙ୍କ ମତରେ ଏହି "ଶବ୍ଦଶକ୍ତି"ର କୌଣସି ଏକ ନିର୍ଦ୍ଦିଷ୍ଟ କେନ୍ଦ୍ର ନାହିଁ । ଏହା ବିଭିନ୍ନ ସୂତ୍ରରେ, ବିଭିନ୍ନ କାରଣରୁ ସୃଷ୍ଟି ହୋଇଥାଏ । ଫଳରେ ଏ ଦିଗରେ

ଯେଉଁମାନେ ବାଧକତା ବା ପ୍ରତିବନ୍ଧକ ସୃଷ୍ଟି କରନ୍ତି ସେମାନେ 'ଅତୀତ ପ୍ରୀତି' (Nostalgia) ଦ୍ୱାରା ମୋହଗ୍ରସ୍ତ କିଂବା ''ଆଧୁନିକ ଉତ୍ତର'' (ଏହାକୁ ''ପରାଧୁନିକତା'' କହିବା ଯୁକ୍ତିଯୁକ୍ତ) ଜ୍ଞାନରାଶି ସଂପର୍କରେ ଉନ୍ମାଦଗ୍ରସ୍ତ । ଏ ଉଭୟ ବିପରୀତାଭିମୁଖୀ ଚିନ୍ତନ ମଧ୍ୟରେ ଏକ ସନ୍ତୁଳନ (Balancing) ମଧ୍ୟ ''ଶବ୍ଦଶକ୍ତି''ର ପ୍ରାୟୋଗିକ ବ୍ୟବହାର ଦ୍ୱାରା ସମ୍ଭବ । ସାମୂହିକ ରାଜନୈତିକ କାର୍ଯ୍ୟଧାରାରେ ଘେରାଉ, ''ଧର୍ମଘଟ'' ଆଦିର ପ୍ରଚଳିତ ମାର୍ଗ ଯେଉଁ ନକରାତ୍ମକ ମାନସିକତା ସୃଷ୍ଟି କରିଥାଏ, ତାହା ଏହି ''ଶବ୍ଦ-ଶକ୍ତି''ର ପ୍ରାୟୋଗିକ ବ୍ୟବହାରର 'ମାନ୍ୟତା'କୁ ମଧ୍ୟ କ୍ଷୁଣ୍ଣ କରିପାରେ । ସାହିତ୍ୟ ଓ ସଂସ୍କୃତିର ବ୍ୟାପ୍ତି କ୍ଷେତ୍ରରେ ''ଶବ୍ଦ-ଶକ୍ତି''ର ପ୍ରଭାବକୁ ଅସ୍ୱୀକାର କରି ହେବନାହିଁ । ତେଣୁ ''ପରଂପରା'' ନାମରେ 'ସଂସ୍କୃତିର ତାତ୍ତ୍ୱିକତା' କ୍ଷେତ୍ରରେ ଯେଉଁ ଗତିଶୀଳତାର ଅଭାବବୋଧ ବିସ୍ତୃତିଲାଭ କରିଛି, ତାହାକୁ ''ଶବ୍ଦଶକ୍ତି'' ପରିବର୍ତ୍ତିତ କରିବାର ସମ୍ଭାବନା ଊଣା ନୁହେଁ । ତେଣୁ ''ପାରିଭାଷିକ ତାତ୍ତ୍ୱିକତା'' କ୍ଷେତ୍ରରେ ''ପରଂପରା''ର ''ପ୍ରାଧାନ୍ୟ''ଥିବାର ସୂଚନା ଦିଏ (ଯେପରି ଏହାର ମୌଳିକ ଅର୍ଥ ହେଉଛି - ଯାହା 'ପରେ' 'ପରେ' ଘଟିଥାଏ ।) ତାହା ଏହି 'ପ୍ରତ୍ୟୟ'ରେ 'ସ୍ଥିତାବସ୍ଥା'କୁ ସ୍ୱୀକାର କରେନାହିଁ - ବରଂ ଏହାର 'ଗତିଶୀଳତା' (Dynamism)କୁ ହିଁ ସୂଚାଇଥାଏ । ତେଣୁ ଯେଉଁ 'ସମାଲୋଚକମାନେ' 'ପରଂପରା'କୁ ସ୍ଥିତାବସ୍ଥାର ସୂଚକ ବୋଲି ବ୍ୟବହାର କରନ୍ତି, ସେମାନେ ଏହି ''ପ୍ରତ୍ୟୟ''ର ଅନ୍ତର୍ନିହିତ ଅର୍ଥ ଯେ ''ଗତିଶୀଳତା'' ଏହା ସ୍ୱୀକାର ନ କରିବା ଏକ ନକରାତ୍ମକ ମାନସିକତା । ତେଣୁ ଅଭିଚର୍ଚ୍ଚା ଜନିତ ବିଶ୍ଳେଷଣ (Discursive analysis)ରେ ଏହି 'ଗତିଶୀଳତା'କୁ କେବଳ ''ଶବ୍ଦଶକ୍ତି'' ଜରିଆରେ ପୁନଃ ପ୍ରତିଷ୍ଠିତ କରାଯାଇପାରିବ । ଯେହେତୁ ଏହି 'ଶବ୍ଦଶକ୍ତି'ର କୌଣସି ନିର୍ଦ୍ଦିଷ୍ଟ 'କେନ୍ଦ୍ରୀୟ ଉତ୍ସ' ନାହିଁ - ତେଣୁ ଏହାକୁ 'ଶାସ୍ତ୍ରୀୟ ପରଂପରା ବା ଅଲିଖିତ/ମୌଖିକ ସ୍ଥାନୀୟ ପରଂପରା (Indegenous tradition) ମଧ୍ୟରେ ଆବିଷ୍କାର କରିବା ସମ୍ଭବ । ପାରିଭାଷିକ ତାତ୍ତ୍ୱିକତା କିପରି ସାଂସ୍କୃତିକ ତାତ୍ତ୍ୱିକତା କ୍ଷେତ୍ରରେ ଅନୁସରଣୀୟ ତାହାର ଉଦାହରଣ ''ଶବ୍ଦଶକ୍ତି''ର ବିଶଦ ଆଲୋଚନା ଦ୍ୱାରା ସମ୍ଭବ । ତେଣୁ ''ଶବ୍ଦଶକ୍ତି''ର

ସଂଜ୍ଞା ନିରୂପଣ କାଳରେ କୌଣସି ଏକ ନିର୍ଦ୍ଦିଷ୍ଟ 'ସଂଜ୍ଞା' ଉପରେ ନିର୍ଭର କରିବା, 'ସାହିତ୍ୟ/ସଂସ୍କୃତି'ର ତାତ୍ତ୍ୱିକତା କ୍ଷେତ୍ରରେ ସାହାଯ୍ୟ କରିବ ନାହିଁ । ବରଂ କୌଣସି 'ଆଧୁନିକ' ବା 'ପରାଧୁନିକ' (Postmodern) ସୃଷ୍ଟିର ସମୀକ୍ଷା (Critique) କଲାବେଳେ ଆମକୁ 'ବିଭିନ୍ନ ସଂଜ୍ଞା'ର ବିଶ୍ଳେଷଣ କରିଆରେ, କେଉଁଟି ସ୍ରଷ୍ଟାର ''ମାନସିକତା''ର ନିକଟବର୍ତ୍ତୀ ତାହାରି ଉପରେ ନିର୍ଭର କରିବାକୁ ପଡ଼ିବ । ମୋର ଅଧ୍ୟୟନ ଓ ଅନୁଭବର ପରିଧି ମଧ୍ୟରେ ତେଣୁ ଏହି ''ଶବ୍ଦ-ଶକ୍ତି''ର ଅନୁସନ୍ଧାନକାରୀମାନଙ୍କ ମଧ୍ୟରେ ମୁଁ ମୋହନ ଦାସ କରମଚାନ୍ଦ ଗାନ୍ଧିଙ୍କୁ ହିଁ ଏହି 'ତାତ୍ତ୍ୱିକତା' ଓ 'ପାରିଭାଷିକ ପ୍ରତ୍ୟୟ' କ୍ଷେତ୍ରରେ ଏକ ଅଗ୍ରଗାମୀ 'ଚିନ୍ତକ' ଭାବରେ ଗ୍ରହଣ କରୁଛି । ''ଶବ୍ଦ-ଶକ୍ତି'' (power)ର ପ୍ରାଧାନ୍ୟ ଉପରେ ଗାନ୍ଧିଜୀ ହିଁ ଭାରତରେ ଓ କେତେକ ପରିମାଣରେ ବିଭିନ୍ନ ରାଷ୍ଟ୍ରରେ ନିଜର 'ପରିଚିତ'କୁ ଦୃଢ଼ କରିପାରିଥିଲେ । ଶବ୍ଦର ଯେପରି ଦୋଳନ (rythm) ଅଛି, ସମାଜର ମଧ୍ୟ ଅନୁରୂପ ''ଦୋଳନ'' ରହିଛି (Rythms of Society) । ତେଣୁ ମୌଳିକ (Basic) ଅନୁଧ୍ୟାନ ପ୍ରୟୋଗାତ୍ମକ (applied) ଅନୁଧ୍ୟାନର ସୂଚନା ଦେଇଥାଏ ଓ 'ପ୍ରୟୋଗାତ୍ମକ ଅନୁଧ୍ୟାନ' ମଧ୍ୟ 'ମୌଳିକ ଅନୁଧ୍ୟାନ'କୁ ପରିବର୍ତ୍ତିତ କରିଥାଏ । ଏହା Linear ନୁହେଁ Cyclical । ଅର୍ଥାତ୍ ଏହା ସରଳରୈଖିକ ନୁହେଁ - ''ଚକ୍ରବତ୍'' ପରିବର୍ତ୍ତନ୍ତେ ସୁଖାନି ଚ ଦୁଃଖାନି ଚ ର ସମଧର୍ମୀ । ''ଓଡ଼ିଆ''ରେ କହିଲେ, ସୁଖ ଓ ଦୁଃଖ ମଧ୍ୟ ଚକ୍ରାକାରରେ ପରିବର୍ତ୍ତିତ ହୁଏ । ତେଣୁ ''ପରଂପରା''କୁ ''ଶବ୍ଦ-ଶକ୍ତି''ର ଏକ ଉଦାହରଣ ଭାବରେ ଗ୍ରହଣ କରାଯାଇପାରେ ।



